# ମନେ ପଡେ 1


ମନେ ପଡେ ବାହା ବେଦୀ
ସିନ୍ଦୂର ଚନ୍ଦନ
ଓଢଣାରେ ଅଧା ଲୁଚା
ଲାଜରା ବଦନ ||
ମନେ ପଡେ ଏକ ଆନେ
ଲୁଚି ଲୁଚି ଦେଖା,
ନବୀନ ତାରୁଣ୍ୟେ ନବ-
କଳପନା ରେଖା ||
ସେ ଦିନ କି ଆଜି ଆଉ
ଆସିବ ବାହୁଡି;
ଅଫେରନ୍ତା ଯଉବନ
ଯାଇଅଛି ଉଡି ||

# ଅଣଲେଉଟା ଦିନ 2

ଦୋଷା ଆସିଲା ନଇଁ
ଦୃଶା ମେଲିଲା କଇଁ
ଚପଳ ସମୀରେ ଅଚଳ ଶିଖରେ
ନିର୍ଝରିଣୀ ଝରେ ଝଟକ ଛଇ;
ଆସେ କଟକେ ବହି,
ଦୂର ବାରତା କହି || -୧

ଘୋର ଘୋଟିବ ଘୋରା;
ନିଶି ନାଶିବ ସାରା;
ଅନ୍ଧ ନିଷଦ୍‌ବରେ ଅଧୀର ଅଧରେ
ପ୍ରକମ୍ପିତ ଗୀରେ ଛୁଟି ଅକ୍ଷରା
ତାନେ ପୂରିବ ଧରା
ବିଷପୀୟୂଷ ଝରା || - ୨

ଚାନ୍ଦ ଆସିବ ଉଇଁ
ସିନ୍ଧୁ ଅମ୍ବୁଦ ଛୁଇଁ
ଗ୍ରହ ତାରାରାଶି ଉଠିଲେ ତରାସି
ଅସ୍ତଯିବ ଅସ୍ତ-ଅଚଳ ଡେଇଁ
ସ୍ମୃତି ଉଠିବ ଚେଇଁ
ନାନା ଭାବନା ନେଇ || - ୩

ଶଇ- ଶବ ସପନ
ଆଶା ମିଶା ଯୌବନ
ପୌଂସ୍ୟ କ୍ଲେଶ ଗତେ ଅନ୍ତିମ ବୃତ୍ତାନ୍ତେ
ମନ ଲୋଡ଼େ ମାତୃ-କ୍ରୋଡ଼େ ଶୟନ
ଦକା ଶଙ୍କା ବିହୀନ
ଅଣଲେଉଟା ଦିନ || -୪

ଲଲାଟେନ୍ଦୁ କବି ୨୦୧୭୦୭୧୧-୨୦୩୫

# କାହା ପାଇଁ ଲେଖିବି କବିତା—୧ 3

କି ଲାଗି ଲେଖିବି କି ଲେଖି ରଖିବି
କାହିଁ ମୋ ପଢିବା ଜନ?
ସେ ତ ଗଲା ଦୂରେ ମନ ଖାଲି ଝୁରେ
ଦେଖିବାକୁ ସେ ଆନନ॥ ୧॥

ଯେବେ ବିଦା ହେଲା କାନ୍ଦି କହି ଗଲା
ମୋ ଲାଗି ଲେଖିବ ଗୀତ।
କେବେ ହେବ ଦେଖା ପଢିବ ମୋ ଲେଖା
କିଛି ସେ କହିଲାନି ତ॥ ୨॥

ଲୁହ ଭିଜା ମୁଖେ କହି ଗଲା ଦୁଃଖେ --
ଆଜି ହେଉ ଅବା କାଲି
ଗୋଟି ଗୋଟି ଗୀତ ଶରଧା ସହିତ
ପଢିବି ଆସିଲେ ଚାଲି॥ ୩॥

ତା ବଚନ ମାନି ଧରେ ମୁଁ ଲେଖନୀ,
ଆଗକୁ ଚାଲେନା ହାତ।
ଖିଆ ପିଆ ଢିଲା ମନା କରି ଗଲା,
ପାଟିକୁ ଯାଏନା ଭାତ॥ ୪॥

ତା ପାଇଁ ଲେଖୁଛି ଗୀତଟିଏ, ବାଛି
ଆଗକୁ ପାଉନି ଭାଷା।
ଏ ଗୀତ ନ ସରୁ କେବେ ବି ନମରୁ
ତା ଲାଗି ଲେଖିବା ଆଶା॥ ୫॥

ଲଲାଟେନ୍ଦୁ କବି ୨୦୧୭୦୯୧୯-୧୨-୦୦

# କାହା ପାଇଁ ଲେଖିବି କବିତା –୨ 4

ସେ ଗୀତ ଲେଖିବି, କେବେ ମୁଁ ସାରିବି
ଆରମ୍ଭ ପାରୁନି କରି,
କିଏ ଏଠି ଆସି ମୋ ପାଶେ ଆଶ୍ୱାସି
ଲେଖି ଦେବ ହାତ ଧରି ? -୬||

ବିଦା ହେବା ବେଳେ ଭରା ଅଶ୍ରୁ ଜଳେ
କହି ସେ ତ ଗଲା ଚାଲି,
ନେବି ନାହିଁ କିଛି, ଏତିକି କହୁଛି –
କବିତା ଲେଖିବ ଖାଲି || -୭||

ଛୋଟିଆ କଥାଟେ ରଖିଛି ଉଛାଟେ,
ଭାଳେ ବୃଥା ବାର ବାର
ହାତେ କରି ସଜ ଧରିଛି କାଗଜ
ପଡିନି କଲମ ଗାର || -୮||

ମାଡିଲାଣି ଲାଜ, ଯଦି ଆସେ ଆଜ
ଦେଖାଇବି କି ବଦନ;
ଏତେ ବେଳ ଯାଏ ଲେଖିନି ଧାଡିଏ
ଇଏ କେଉଁ କବିପଣ || -୯||

ଦିନ ଯାଏ ନଇଁ ଅନ୍ଧାର ଘନେଇ
ନିଶବଦ ହେଇ ଗଲା,
ପାରୁ ନାହିଁ ଲେଖି: ହେଲେ ଦେଖା ଦେଖି
କି ତାକୁ କହିବି ଭଲା || -୧୦||

ଲଲାଟେନ୍ଦୁକବି୨୦୧୭୦୯୨୦-୦୦୧୨

# କାହା ପାଇଁ ଲେଖିବି କବିତା –୩ 5

ସହଜ ଆସିବ ବାହୁଡି ବୋଲି ବାନ୍ଧିଛି ଆଶା;
ଦେଖିବି ଗତାକ୍ଷ-ଲଡଡି ଜାଗି ଉଠେ ପିପାସା ||-୧୧||

ଛୋଟିଆ ଦୀପଟେ ଚଉରା ପାରେ ରଖିଛି ଜାଳି;
ଦେଖିଲେ ତା ରୂପ ପସରା ଯିବି କଲମ ଚାଳି ||-୧୨||

ଗୋଟି ଗୋଟି ଯେବେ ଦୂରେଇ ଯିବେ ଆପଣା ଜନ
କବିତା ଲେଖି କେ ବୁଝାଇ ଦେବ ଅବୁଝା ମନ ||-୧୩||

ଲେଖିବି ତା ଲାଗି ପଦଟେ, ରାତି ରହେ ମୁଁ ଚାହିଁ;
କପଟେ ହେଉ କି ଅଝଟେ, ସେ ତ ଆସିଲା ନାହିଁ ||-୧୪||

ପାରିବ କି ପୋଛି ମରମ ବ୍ୟଥା କଲମ କୁହ ?
କି ସରମ: କେଉଁ କଲମ ରେଖା ମଲମ ନୁହଁ ||-୧୫||
ଲଲାଟେନ୍ଦୁ କବି
୨୦୧୭୦୯୨୧-୦୫୫୦

# କାହାପାଇଁଲେଖିବିକବିତା –୪ 6

ଗଲା ଏତେ ଦିନ, ଜଳ ଛାଡି ମୀନ
ଯେସନେ ରହିଲା ମନ;
ଦେଖା ଦେଇ ଥରେ କଥା ହେଲା ପରେ
କାହିଁ ହଜି ଗଲା ଧନ || -୧୬||

କହି ଗଲା ଚାଲି ଏବେଠାରୁ ଖାଲି
ଥରେ ଅଧେ ଆସୁଥିବ;
ପଢି ମୋର ଗୀତ ହେବ ଅନ୍ତର୍ହିତ
ପଢା ଯେବେ ସରି ଯିବ || -୧୭||

ଲେଖିଲେ ଅଳପ ନ କରି ଗଳପ
ପଢି ତାକୁ ଯିବ ଚାଲି;

ଲେଖା ଥିଲେ ବେଶି ତା ମନ ନିବେଶି
ପଢି ସେ ଗପିବ ଖାଲି || -୧୮||

କହିଛି, "ଲେଖୁଥା ଦରଦୀ କବିତା
ବ୍ୟଳୀକ-ବୋଳିତା କଥା;
ଗ୍ରଥିତ ଜୀବନ ପ୍ରମଥିତ ମନ
ନିରାଦର-ବିଧୁରତା || -୧୯||

ଆଚରି ଅଳସ ମୋ ଲାଗି ସରସ
ନ ଲେଖିବ ଯେବେ ଗୀତ;
ଲୁହ ଧାର ଖାଲି ଦେବି ସିନା ଢାଳି
ଆଉ ମୁଁ ଆସିବିନି ତ ||" -୨୦||

ଦିଅ ମୋତେ ମାତଃ ମତି ଅପ୍ରମିତ
ଲେଖିବାକୁ ରାତି ସାରା;
ସେ ଅବୋଲକରା ମୋ ଦୁଃଖ ପାସୋରା
ଢାଳି ଚାଲୁ ପ୍ରୀତି-ଧାରା || -୨୧||

ଲଲାଟେନ୍ଦୁକବି୨୦୧୭୦୯୨୨-୦୧୨୬

## କାହାପାଇଁଲେଖିବିକବିତା – ୫ 7

କଥା ତାର ଭାଳି ଭାଳି ହାତ ନ ପାରିଲି ଚାଳି
କହିଲା ସେ ଛାଡିଲ କି ଲେଖା ?
ଲେଖା -- ଛାଡନା ମୁଁ କରୁଥିବି ଦେଖା || ୨୨||

ତୁମ ଲେଖା ଦେଖି ଦେଖି ଦି' ପଦ ଦେଇଛି ଲେଖି;
ନ ଲେଖିଲେ ତୁମେ ଏବେ ଆଉ,
ଆଗେ -- ଲିଖନ ମୋ ସପନରେ ଥାଉ || ୨୩||

ତୁମେ ଯେବେ ଚାହଁ ସତେ ଲେଖିବି ମୁଁ ତୁମ ସାଥେ
ରାଣ ମୋର ଲେଖ ତୁମେ ପୁଣି ||
ମୁଁବି -- ପାରିଲେ ଲେଖିବି ତାକୁ ଶୁଣି || ୨୪||

ଖୋଲିବ ସେ ରାଣ ବୋଲି କାଗଜ ଧରନ୍ତେ ଖୋଲି
ଧୀରେ ଧୀରେ ଆସୁଛି ଭାବନା;
ଆସୁ, -- କରିବି ମୋ ଲେଖନୀ ଚାଳନା || ୨୫||

ଏପରି ଯିଏ ପାଇଛି ସଶ୍ରଦ୍ଧ ପାଠକ କିଛି
ତେଜିବ ସେ ପ୍ରଦୀପ-ସଳିତା ?
ରାତି -- ରାତି ପୁଣି ଲେଖିବି କବିତା || ୨୬||

ଲଲାଟେନ୍ଦୁକବି
୨୦୧୭୦୯୨୪୧୨୫୩

# କାହାପାଇଁଲେଖିବିକବିତା – ୬ 8

ସାଥୀ କେତେ ପ୍ରଶ୍ନ କଲେ ପ୍ରୀତି ମିଶା କୁତୁହଳେ
ମୁହିଁ -- କା ଲାଗି ଲେଖୁଛି ମଥା କଷି ଗୋ ?
ତାଙ୍କୁ -- କହେ, ଭଲ ଥିଲେ ପଢ ବସି ଗୋ ||-୨୭||

ସଭିଏଁ ଆପଣା ଜନ କାହାକୁ ଅଛି ବାରଣ ?
ପଢ -- ଯିଏ ଚାହିଁ ପଢିବ ମୋ ଗୀତ ଗୋ
ମୁଁତ -- ଲେଖୁଛି ନିଦାଘ ଧାରା ଶୀତ ଗୋ ||-୨୮||

ବୋଲିଛନ୍ତି କାଳେ କାଳେ ଗିରି ବନ ତୋଟା ମାଳେ
ପଲ୍ଲୀ -- ନଗର ଡଗର ସଭା ସ୍ଥଳେ ଗୋ
ଭିନ୍ନ -- ଭିନ୍ନ ରୂପେ କବିତା ସକଳେ ଗୋ ||-୨୯||

କି ଗୀତ ଲେଖିଲା କିଏ, ଯାହାକୁ ବାଛିଲା ଯିଏ
ସେ ତ -- ଆନନ୍ଦେ ଗାଇଲା ସେ ସଂଗୀତ ଗୋ ;
ସୁଖୀ -- ଦୁଃଖୀ କଲେ ଚିତ୍ତ ବିମୋହିତ ଗୋ ||-୩୦||

ଅର୍ଭ ବୋଲେ ଚାଟଶାଳେ କୁଟୁମ୍ବିନୀ ପାକଶାଳେ
ବୋଲେ -- ଦେବାଳୟେ ଶିବାଳୟେ ଦ୍ୱିଜ ଗୋ
ଜାଣ -- କବିତା ଏଭଳି ଗୋଟେ ଚିଜ ଗୋ ||-୩୧||

ଜାତି ନାହିଁ ପତି ନାହିଁ କବିତା ସଭିଙ୍କ ପାଇଁ
ବିଶ୍ୱ -- ସାରା ପ୍ରତି ପରାଣେ କବିତା ଗୋ

ବୃଦ୍ଧ -- ଶିଶୁ ଯୁବା ଯୋଷିତା ବନିତା ଗୋ ||-୩୨||

ଲେଖୁଛି ସଭିଙ୍କ ପାଇଁ ଭଲ ନ ଲାଗିଲେ ଭାଇ
କହ -- କି ଭାବେ କରିବି ସଂଶୋଧନ ଗୋ;
ଆଉ -- କି ଲେଖି ତୋଷିବି ତୁମ ମନ ଗୋ ||-୩୩||

ଲଲାଟେନ୍ଦୁକବି–୨୦୧୭୦୯୨୫୨୩୫୨

## କାହା ପାଇଁ ଲେଖିବି କବିତା – ୭ 9

ସେଇ ଫୁଲ ତୋଳି ଆଣିବ କେ ବୋଲି
ଲେଖା ଛାଡି ପାରୁ ନାହିଁ,
କେମିତିକା ମାଳୀ- କାମ କରେ ବାଳୀ,
ଦିନ ବିତେ ତାକୁ ଚାହିଁ || ୩୪
ସ୍ୱଜନ, ପଡିଶା ନ ହେଇ ପଇସା
ଛୁଇଁବନି ମୋର କହେ;
ଫୁଲ ଦେଇ ନିତି ନୂଆ ନୂଆ ଗୀତି
ଶୁଣିବାକୁ ବସି ରହେ || ୩୫
ଥକିଲେ ମୋ ହାତ କରି ପ୍ରଣିପାତ
ପ୍ରଭୁଙ୍କୁ ପକାଏଡକା --
କି ଦିଅ ଅଭୟ ? ଏଡେ ନିରିଦୟ,
ଲେଖୁ ଲେଖୁ କର ଥକା || ୩୬
ଅନାବିଳ ମତି ଅମୃତ ଲପତି
ସଞ୍ଚାରେ ଛନ୍ଦ ଝଙ୍କାର !!
ଭରେ ପ୍ରଗଲ୍ଭତା, ସରେ ମୋ କବିତା,
ଅଦୃଶ୍ୟର ଚମତ୍କାର || ୩୭
ଡରି ଥରେ ଥରେ ଆସି ମୋ ପାଖରେ
ଧୀରେ ଧୀରେ କହେ ବାଳା;
ପୂଜା କର ନାହିଁ ହେଲେ ବି କି ପାଇଁ
ନିତି ନିତି ନିଅ ମାଳା ? || ୩୮
ତୁମ ଗୀତ ପଢି ନୟନୁ ମୋ ଝରି

ଲୁହ ଯାଏ ଭରି ଦେଖ;
ବାଷ୍ପିତ ଚେତସେ ବିନା ଚକ୍ଷୁ ରସେ
କେମିତି କବିତା ଲେଖ ? || ୩୯
ନିର୍ମଳା ବାଳିକା କୋମଳା କଳିକା
କି ଦେବି ତାକୁ ଉତ୍ତର ?
ହାତେ ହାତ ଧରି କହେ – ଟିକି ପରୀ,
ଫେରିବୁନି କି ତୋ ଘର ? || ୪୦

ଲଲାଟେନ୍ଦୁକବି୨୦୧୭୦୯୨୭୧୫୪୫

## କାହା ପାଇଁ ଲେଖିବି କବିତା-୮ 10

ଲେଖୁ ଲେଖୁ ନିଦ ଅଳସେ ଥରେ ପଡିଲି ଶୋଇ;
ମାଳୀ ଝିଅ ଥିଲା ମୋ ପାଶେ ଜଗି ମୋ ଖାତା ବହି ||-୪୧
ବାଜି ଗଲା ହାତ ମୋହର, ଗଲା ଖାତାଟା ପଡି;
ଭିତରେ ସାଇତା ପତର ଗୋଟେ ପଡିଲା ଝଡି ||-୪୨
ତାକୁ ଧରି ମାଳୀ-କୁଆଁରୀ ବସି ରହିଲା ଚାହିଁ;
ଉଠିବାରେ ମୋତେ ପଚାରେ -- "କିଏ ଏ ଝିଅ ? କାହିଁ ||-୪୩
କି ଭାବେ ଏହାକୁ ଜାଣିଲ ? ଏ ମୋ ପୁରୁଣା ଥାଥୀ;
ବହୁ ଦିନୁ ଦେଖି ନାହିଁ ମୁଁ, ଖୋଜେ ବିକଳେ ଅତି ||-୪୪

ଟାଳି ନ ପାରି ତା ବଚନ ସବୁ କହି ମୁଁ ଗଲି --
"ଏ ନୁହେଁ କେହି ମୋ ନିଜର, ପୁଣି ଝିଅଠୁ ବଳି ||-୪୫
ଏହି ସୁକୁମାରୀ ବାଳିକା ପାଇଁ ମୋ ଗୀତ ଲେଖା;
ଏବେ ଡାକି ଆଣି ପାରିବି ନାହିଁ, କରିବୁ ଦେଖା ||-୪୬
ବିଦା ବେଳେ କଥା ନେଇଛି ସିଏ ନିୟମ କରି --
ନିତି ମୁଁ ଲେଖିବି କବିତା- ଟିଏ -- ମୋ ହାତ ଧରି ||-୪୭
ଲେଖିବି ଦରଦୀ ସଂଗୀତ ଟୋପେ ନ ଢାଳି ଲୁହ,
ସେ ଲାଗି ଆସେନା ମୋ ଲୋତ, ଚାପି ରଖେ ମୋ କୋହ ||-୪୮

କହିଛି ଯେ ଦିନ କବିତା ଲେଖି ପାରିବି ନାହିଁ;
ନ ଦେବି ମାଳ କି ଫୁଲର ପେଣ୍ଡା ସେ ଦିନ ପାଇଁ ||-୪୯

ତା ଲାଗି ରଖୁଛି ତୋ ପାଶୁ ମାଳା ନିତି ଗୋଟିଏ;
ଦିନ କେତେ ମୋର ଯାଉ ରେ ବାଳା., କାହାର କିଏ ? ||-୫୦

ନାହିଁ ସେହି ଅଭିମାନିନୀ ତୋର ପୁରୁଣା ମିତ;
ଯା ଲାଗି ଲେଖେ ମୁଁ ନ ମାନି ଖରା ବରଷା ଶୀତ ||- ୫ ୧
ତୋ ପରି କଅଁଳ ତା ମୁହଁ, ହାତ, ତା ଆଖି, ପତା;
ଛାଡି ସେ ଯାଇଛି ମୋ ପାଶେ କୁଡ କୁଡ ମମତା ||- ୫ ୨

ମାଗିଛି ଫୁଲ ସେ ବରଷେ, ଆଉ ମାସଟେ ବାକି;
ଦେଉ ଥିବି ଫୁଲ, ହରଷେ ସିଏ ଥିବ ଚାହିଁକି “ ||- ୫୩

ଲଲାଟେନ୍ଦୁ କବି ୨୦୧୭୦୯୨୭୧୫୪୫

# ଲେଖିବି ପଦେଅଧେ 11

ହାତରେ କଲମ ନେଇ କାଗଜରେ ଲେଖିଦେଲି--
ଫେସବୁକ୍ ଟା ଥୋଇ ଦେଇ ହ୍ବାଟ୍ସଆପ୍ ଦେଇଛି ଖୋଲି |୧

ଆସୁଅଛି ଦଶହରା ଏବେଠୁ ଶୁଭେଚ୍ଛା ଦେଲି;
ରାଗରୋଷ ଛାଡି ସାରା ସେଇଠି ଭେଟିବ ଖାଲି |୨

ଥାଉ ଯେତେ ଡର ଭୟ ନାଚ୍ଚେ ମୁଁ କରିବି ଦେଖା;
ସଜାଡି ଭାବନାଚୟ କର ଏବେ ଗୀତ ଲେଖା | ୩

ଲେଖିନି ମୁଁ କେବେ ଗୀତ ଏଣିକି ଲେଖିବି ବୋଧେ;
ଭୁଲ କଲେ କହିବ ତ ଲେଖିବି ମୁଁ ପଦେ ଅଧେ |୪

ବିନୋଦିନୀ ଜେନା

# ଶର୍ବରୀର ମୃତ୍ୟୁ ପରେ 12

ଦେଖ ରେ ଶର୍ବରୀ ଭାଗ୍ୟ ଅନୁସରି

ଆଶା ଯାଏ ମରି ମରି
ଦିଗନ୍ତ ସେ ପାରେ କାହା ଅଶ୍ରୁ ଧାରେ
ସଂଗୀତ ପଡୁଛି ଝରି ॥ ୧ ॥
ଯିଏ କହୁଥିଲା ସିନ୍ଦୂରା ଫାଟିଲା
ଆଶାର ସଂଗୀତ କାହିଁ?
ଛୋଟିଆ କଥାଟେ କହିଲି ଉଛାଟେ,
ଥରଟେ ଶୁଣିଲାନାହିଁ ॥ ୨ ॥
ଗହନ ନିଶାରେ ମୌନ ଜିଗୀଷାରେ
ଶାସ୍ତ୍ରେ ଶସ୍ତ୍ରଜ୍ଞାନ କରି;
ଶାର୍ବରିକ କହେ ନାଶିବି ନିଗ୍ରହେ
ଧ୍ୟାନଯଜ୍ଞେ ସ୍ନାନ କରି ॥ ୩ ॥
ଶିବପୁର ସ୍ଥଳେ ଶବାଧାର ତଳେ
ବାଳ ପଞ୍ଚାବସ୍ଥ ଦେଖି
କହେ ସର୍ବବେଦ ତାରୁଣ୍ୟେ ଏ ଭେଦ
ପ୍ରାରବ୍ଧ ଦେଇଛି ଲେଖି ॥ ୪ ॥
କେତେ ନବ ନବ ଘେନି ଆସେ ଭାବ
ତାମସ ରଜନୀ ଘୋର;
ଇନ୍ଦୁ ଅସ୍ତମିତେ ନବୀନ ପ୍ରଭାତେ
ଘଟିଥିବ ଭାବାନ୍ତର ॥ ୫ ॥
ଏଭାବ ହଜିବ ଏଠୁ ଯେବେ ଯିବ
ନିଷଦ୍ଵର ଅପସରି;
ମୋ ନେତ୍ର ଅଗ୍ରତେ ଭାବ ଅସ୍ତଗତେ
ନଗରାଟା ଥିବ ମରି ॥ ୬ ॥

ଲଲାଟେନ୍ଦୁକବି ୨୦୧୭୦୯୨୩-୧୭୩୨

ଉଛାଟ= ଉତ୍କଣ୍ଠା; ଜିଗୀଷା= ଜିତିବାରଇଚ୍ଛା; ଶାର୍ବରିକ= ଶର୍ବରୀଚର, ରାତ୍ରିଚର; ପଞ୍ଚାବସ୍ଥ= ମୃତଦେହ; ସର୍ବବେଦ= ସନ୍ଥ, ସନ୍ନ୍ୟାସୀ; ନିଷଦ୍ଵର= ରାତ୍ରି;

## ସୁଖୀଭବ 13

ଆରେସୁନା ! ଆନମନା କି ଲାଗି ନୟନ ?
କେହି କାହିଁ ନେବେ ନାହିଁ ତୁମ ଗଣ୍ଠି ଧନ ! ||-୧||
ଛିଡା ହେଇ ଅଛ ଚାହିଁ କହ କାହା ପଥ,

| | | | |
|---|---|---|---|
| ଭାଳି ଭାଳି -- | "କେବେ ମିଳି | ଯିବେ ଅନୁମତ ? | ||-୨|| |
| ଥାଆନ୍ତେ କି | ପାଖା ପାଖି | ମୋ ଜୀବନମିତ; | |
| କାନେ କାନେ | ହୃଷ୍ଟ ମନେ | ଶୁଣାନ୍ତି ସଙ୍ଗୀତ !! | ||-୩|| |
| ପାରନ୍ତିନି | ଜମା ଜାଣି | ଦିବସ ରଜନୀ; | |
| ପ୍ରିୟ ଉକ୍ତ | ଅତିରିକ୍ତ | ନ ଥାଆନ୍ତା ଧ୍ୱନି | ||-୪|| |
| ଶୁଣି ଶୁଣି | ତାଙ୍କ ବାଣୀ | ବିତନ୍ତା ସମୟ; | |
| ତାଙ୍କ ପାଶ | ମୋରଲେଶ | ନ ରହନ୍ତା ଭୟ | ||-୫|| |
| ଚାରି ଦିନ | ଆଗମନ | ଲାଗେ ଚାରିମାସ: | |
| ସରିବ କି | ଥିବ ବାକି | ଲାଗେ ଭାରି ତ୍ରାସ ! | ||-୬|| |
| କିଏ ଜାଣେ | କେତେ ଦିନେ | ମଧୁର ମିଳନ: | |
| ଏକ ଆନେ | ସମର୍ପଣେ | ମଧୁ ଆଲିଙ୍ଗନ !" | ||-୭|| |
| ଭାଳନାରେ | ଜମା ସୁନା | ଭାଳନା ଭାଳନା, | |
| ଶୁଦ୍ଧ ଚିତ୍ତେ | ଅପଘାତେ | ନାହିଁ ସମ୍ଭାବନା | ||-୮|| |
| ତୁମ ସମ | ପ୍ରିୟତମ | ଥିବେ ଉଦ୍ବେଳିତ; | |
| ତାଙ୍କୁ ବୋଧ | ଦେଇ ସଦ୍ୟ | କର ପ୍ରସାଦିତ | ||-୯|| |
| ଏକ ଆନେ | କାନେ କାନେ | ଦିଅ ପ୍ରବୋଧନ; | |
| କାଲି ପରି | ଯାଉ ସରି | କେତେଟା ଅହନ | ||-୧୦|| |
| ତୁମ ପ୍ରିୟ | ମଧୁଲିହ | ବାସ ବାରି ବାରି, | |
| ଆସି ପାଶେ | ଅନାୟାସେ | ଦୁଃଖ ଦେବହାରି | ||-୧୧|| |
| ଦେଖୁଛ ତ | ଚିତ୍ରପଟ୍ଟ | ଅଭୀଷ୍ଟ ବଦନ; | |
| ହେବ ପୂରା | ସେ ଅଧୁରା- | ଅଧୁରା ମିଳନ | ||-୧୨|| |
| ଅବିରାମ | ଶୁଦ୍ଧ ପ୍ରେମ | ରଖିଥାଅ ମନେ; | |
| ସକୁଶଳ | ହେବ ଫଳ | ଦିବ୍ୟ ଉଦ୍ବାହନେ | ||-୧୩|| |
| ଏକ ଆନ | ଜଗି ମନ | କରିବ ସଂସାର, | |
| ପରସ୍ପର | ଧରି କର | ଭବସିନ୍ଧୁ ପାର | ||-୧୪|| |
| ଆଶୀର୍ବାଣୀ | ଘେନ ବେନି, | ଦେଲି ଶରଧାରେ; | |
| ସୁଖୀ ରୁହ | ଅହରହ | ମଜ୍ଜି ପ୍ରିୟତାରେ | ||-୧୫|| |

ସାଶୀର୍ବାଦ: ଲଲାଟେନ୍ଦୁକବି୨୦୧୭୧୦୦୫୦୩୦୨

## ଅସ୍ତବ୍ୟସ୍ତ ହସ୍ତାକ୍ଷର 14

ଜରିତ ଟୁକୁରା କାଗଜେ ଖୁଚୁରା
କୋତରା କବିତା ଗାର,

କିବା ସେ କବିତା, ଜୀବନ ସଂହିତା,
ମୁଁ ତା କ୍ଳାନ୍ତ ଲିପିକାର || ୧||

ଜୀବନ ମଧ୍ୟାହ୍ନେ ଭରି ନାହିଁ ଦିନେ
କର୍ଣ୍ଣିକେ କଣିକେ କାଳି;
ପଶ୍ଚିମ ସାୟାହ୍ନେ ପ୍ରଶୀର୍ଣ୍ଣ ସଦନେ
କି ହେବ ପ୍ରଦୀପ ଜାଳି || ୨||

ଚିତ୍ତ ଉଦ୍‌ବେଳିତ ଲେଖିବି ଉଦିତ
ଭାବନା ସ୍ତରକୁ ସ୍ତର;
ପ୍ରୀତିଗୀତିଝରା ସ୍ମୃତିବୀଥୀଭରା
ଅସ୍ତବ୍ୟସ୍ତ ହସ୍ତାକ୍ଷର || ୩||

ଯିବି ଯେବେ ଦୂରେ ନିୟତ ମୋ ପୁରେ
ତୋଳି ଦେବି ଉପହାର;
ଭାଗ୍ୟେ ଥିଲେ କା'ର ହେବ ଗଳାହାର,
କ୍ଳାନ୍ତି ଶ୍ରାନ୍ତି ଉପଚାର || ୪||

ଲଲାଟେନ୍ଦୁ କବି
୨୦୧୭୧୦୨୦୧୨୪୮

**ଜରିତ= torn, କର୍ଣ୍ଣିକା= pen; କଣିକା= drop; ପଶ୍ଚିମସାୟାହ୍ନ= late evening; ପ୍ରଶୀର୍ଣ୍ଣସଦନ= broken house; ବୀଥୀ= gallery; ଅସ୍ତବ୍ୟସ୍ତ= confused; chaotic, disordered;**

# ମଧୁରବନ୍ଧୁରଅଦ୍ୱୟବୋଲିଶବ୍ଦରେନାହିଁକିଛି 15

ପ୍ରୟୋଗେ ମଧୁର ବିୟୋଗେ ବିଧୁର ଉଦ୍ୟୋଗେ ମେଦୁର ହସ
ପ୍ରୀତି କୁ ନିକଟ ଭୀତିକୁ ବିକଟ ଶବଦ ଶରଧା-ବଶ ||୧||

ଥାଉ ପଥଧାରେ, ସ୍ରୋତସ୍ୱତୀ-ସାରେ, ଗହୀର କାସାରେ, ସରେ
ଜାଣ କି ନ ଜାଣ ଆଣ କି ନ ଆଣ ସେ ପୁଷ୍ପ ରସ ସଞ୍ଚରେ ||୨||

ନୁହେଁ ସେ ବିସମ     ନୁହେଁ ଅନୁପମ     ବିକ୍ରମ ବିଭ୍ରମ ଯୁତ
ଅର୍ହତ ମାଳିକେ     ବାଞ୍ଛିତ କଳିକେ     ପ୍ରତିସର ସାରସ୍ୱତ     ||୩||

ମଧୁର ବନ୍ଧୁର     ଅଦ୍ୱୟର ଗାର     ଶବ୍ଦ ମଧ୍ୟେ ନାହିଁ ଚିହ୍ନ;
ସରସ୍ୱତୀ ପଦେ     ତପସ୍ୟା ସମ୍ପାଦେ     କାବ୍ୟ-କୃତି ଭିନ୍ନଭିନ୍ନ     ||୪||

ଲଲାଟେନ୍ଦୁକବି୨୦୧୭-୧୦-୨୧-୨୦:୪୮

**ମେଦୁର= dense; ସାର= water; କାସାର= lake; ଯୁତ= mixed with; ଯୁତ= combined, added; ଅର୍ହତ= worthy; ମାଳିକ= gardener; ପ୍ରତିସର= garland; ସାରସ୍ୱତ= eloquent; ଅଦ୍ୱୟ= identity;**

## ଆଉ ଦେବି ନାହିଁ ଗାଳି     16

ମୁଁ ବି ତୋତେ ଭଲପାଏ ,     ଭଲପାଏ ବହୁତ;
ତୋତେଏଠି ଖୋଜୁ ଥାଏ     ମୁହୂର୍ତ୍ତକୁ ମୁହୂର୍ତ୍ତ     |1|

କଥା ପଦେ ହେବା ପାଇଁ     କରେ କେତେ ବାହାନା;
ମିଛେ ମିଛେ ଦୋଷ ଦେଇ,     ହସମଜା, କହନା     |2|

ଦିଏ ଖାଲି ଗାଳି ବୋଲି     ଅଲିଅଳି ଦୁହିତା,
ଦୁଃଖ ପାଉ ଯଦି ଖୋଲି     ମନକଥା କହିଥା     |3|

ଆଉ ଦେବି ନାହିଁ ଗାଳି     ମିଛ ଅବା ସତର
ସବୁ ଖୋଲି କହିଦେଲି     ଧରିବୁନି ଏଥର     |4|

ଅଭିମାନ ଅଛି ଆଉ ?     କହି ଦିଅ ଧନ ରେ;
ଗୁମ୍ ମାରି ବସିଥାଉ     କିସ ରଖି ମନରେ     ?5|

ଥରେ ତୁହି ଦିଅ କହି,     ମନ ହେବ ହାଲୁକା,
ବାତେ ଯଥା ଉଡିବୁଲେ     ଶୁଖିଥିଲେ  ବାଲୁକା     |6|

ପାଠ ପଢ, ପାରିବିତ     ପାଠ ଦେବି ବତାଇ,

ନେଟ୍ ଟିକେ କମ୍ କର ଦେଲିଏବେ ଚେତାଇ **|7|**

ଲଲାଟେନ୍ଦୁକବି (୨୦୧୭୧୦୧୯)

## ତାରୁଣ୍ୟ ଶରଣ୍ୟ 17

ଯେତେକହଆଜି ତରୁଣତରୁଣୀ
ଉଦ୍ଧତଉନ୍ମନା,
ମୁଁଦେଖେପ୍ରତିଟି କଅଁଳହୃଦୟେ
କ୍ରାନ୍ତିସମ୍ଭାବନା !
କଲେ -- କରଶତଧିକ୍କାର,
ମୋ ସାଥେ କରେ ମୋ
ବାଲ୍ୟକାଳ ସେ
ହୃଦକନ୍ଦରେ ଅଭିସାର ||୧||

ତାରୁଣ୍ୟେ ଆରଣ୍ୟ କଳ୍ପନାଭରା
ଅଶ୍ଲୁଳ ଆବେଶରେ
ଗୋଟା ବିଶ୍ୱର କୋଟି ନିଃଶ୍ୱାସେ
ଆଶାର ଉସ୍ର ଝରେ॥
ତାର -- ଟିକି ଟିକି ସ୍ପନ୍ଦନ
ତୋଳି ଧରେ ସତେ
ରକ୍ତିର ପଥେ
ନବୀନ ପ୍ରସ୍ଥ ସାନ୍ଦ୍ରନ ||୨||

ଲଲାଟେନ୍ଦୁକବି ୨୦୧୭୧୦୧୮୦୨୧୦
ଅଭିସାର= ସାକ୍ଷାତକାର; ଆରଣ୍ୟ= ବନ୍ୟ; ଉସ୍ର= କିରଣ; ରକ୍ତି= ଅନୁରକ୍ତି, ଶ୍ରଦ୍ଧା; ପ୍ରସ୍ଥ= ଯାତ୍ରା, ପ୍ରସାର;

## ପରମ ଶ୍ରଦ୍ଧେୟା ... ! 18

କି କରିବି ଯଶ ତୋ ବାଣୀ ସରସ

ଉଦର ଦେଉଛି ଭରି;
କହୁଥା ସଂଯୁକ୍ତା ମିଠା ତୋର କଥା
ପ୍ରାଣ ମୋର ଉଠୁ ଭରି |
ଦିନେ କେବେ ଥରେ ଯିବି ଯେବେ ଦୂରେ
ଆନ ଏକ ଜନପଦେ,
ମନ ଔଦାସୀନ୍ୟେ ବୈତାନ୍ୟେ ବୈଜନ୍ୟେ
ଗାଇବୁ ମୋ ଗୀତ ପଦେ ||
ଇତି | ତୋ ଶୁଭାକାଙ୍କ୍ଷୀ କବିଭାଇ

## ନିଜେ ପଡିଅଛୁ ବନ୍ଧା 19

ସୁନା ଧନଟା ରେ ଥିଲୁ କେଉଁଠାରେ
ମିଳିଲୁ କହ କିପରି,
ଅଦୃଶ୍ୟ ମମତା କୋଟି ଆତ୍ମୀୟତା
କୁଆଡୁ ଆସିଲା ଝରି ||-୧`||

ଶରଧା-ସୂତାରେ ଅତି ପ୍ରିୟତାରେ
ଏଭଳି ହେଇଛୁ ଛନ୍ଦା
ଛାଡି ଦୂରେ କାହିଁ ଖସିବାର ନାହିଁ
ପଡିଯାଇ ଅଛୁ ବନ୍ଧା ॥୨॥

ଏତିକି ଶରଧା ରଖିଅଛୁ ସଦା
କି ଲାଗି କହରେ କହ
ହେଉ ବି ମିଛରେ, ଏକା ରୋଷ ଭରେ
ପାରିବୁ ତ ଥରେ ରହ ॥୩॥

କଅଁଳ କଅଁଳ ସୌମ୍ୟଶୁଷ୍କଜଳ
ସହଳ ଅପରେ ରଖି
ବାନ୍ଧୁବାନ୍ଧୁ ଆନେ ମମତା ବିତାନେ
ନିଜେ ହେଲୁ କବରକୀ ॥୪॥

ଅଳପ ଦିନରେ ମନ ଗହନରେ
ରହିଲୁ ଯେ ଘର କରି
ଆଉ ଏ ଜୀବନେ କେବେଏକଆନେ
ହେବ କି ରେ ପର କରି ||୫||

ଲଲାଟେନ୍ଦୁକବି୨୦୧୭୧୦୧୫୨୩୩୩

ଶୁଷ୍ମ= ସୁଗନ୍ଧ; କବରକୀ= ବନ୍ଦିନୀ

## ରାତ୍ରି-ବାସରସନ୍ଧିରେ 20

ଖର
ସ୍ୱନ୍ଦିତ ହୃଦ-କନ୍ଦରେ
ବୃସ-
ବ୍ୟୁଷ ଉର୍ବରା ଗନ୍ଧରେ
ହାତେ
ତୋଳା ଟିକି ସ୍ମୃତି-ମନ୍ଦିର,
ପ୍ରୀତି-
ବନ୍ଧନେ ବାଣୀ-ବନ୍ଦୀର ||-୧||

ଭରି
ହୃଦୟ ସିକ୍ତ କନ୍ଦିରେ
ଏଇ
ରାତ୍ରି-ବାସରସନ୍ଧିରେ,
ବିତୁ
ପ୍ରଧ୍ୟାନ ଭାରେ ଅନ୍ଧିକା
ଶତ
ସମ୍ଭାବନାରେ ଛନ୍ଦିକା ||-୨||

ଯେବେ
ଶ୍ରାନ୍ତ ଦ୍ୱିଭାତ ସଞ୍ଜନେ
ଥିବ

ମୃଦ୍‌ଘଟ ମୃଦୁ ଗୁଞ୍ଜନେ;
ହୃଦ-
ସ୍ପନ୍ଦନ ଥୋଇ ମଲ୍ଲିକେ
ରଖି
ଦେଇଥିବି ଧୋଇ ତଲ୍ଲିକେ ||-୩||

ଲଲାଟେନ୍ଦୁ କବି୨୦୧୭୧୦୧୩୧୬୦୦

ବୃସ= water; ବ୍ୟୁଭ= wet, drenched; ଉର୍ବରା= soil, earth; ବାସର=day; ପ୍ରଧ୍ୟାନ= reflecting; ଅନ୍ଧିକା= night; ଦ୍ୱିଭାତ= morning; ଛନ୍ଦିକା= ଛନ୍ଦିହେଇ; ଦ୍ୱିଭାତ= morning; ସଞ୍ଜନେ= ସଂଯୋଗ (ଆଗମନ)ରେ; ମୃଦ୍‌ଘଟ= soil, earth; ମଲ୍ଲିକା= box; ତଲ୍ଲିକା= keys;

## ସ୍ୱପ୍ନ ଦେଖି କାହିଁକି କାନ୍ଦୁଛୁ ରେ? 21

ମୁଁ ତ ଅଛି ପାଶେ ପାଶେ
ତୋ ହିତଦେଖିବା ଆଶେ;
କହ ଧନ କାନ୍ଦିଲୁ କି ପାଇଁ,
କିଏ-- କହିଲା ମୁଁ ଏ ଜଗତେ ନାହିଁ ?-୧

ବହୁ ଦିନ ଅଛି ବାକି,
ତୋ ହାତ ପରଶା ଚାଖି
ଦେଖିବି ମୁଁ ତୋର ବାହାଘର,
କେତେ -- ଝଟକିବ ତୋ ସାଥେ ତୋ ବର॥ -୨

ଦେଖିବି ତୋ ଶାଶୁ ଘର,
ତହୁଁ ଶରଧା ଆଦର
ଝର ଝର ଝରିବ ତୋ ପରେ;
ମୋତେ – ଚିଠିରେ ଲେଖିବୁ ଥରେ ଥରେ॥ -୩

ହେବେ ତୋର ପୁଅଝିଅ,
ଯତନେ ରଖିବୁ ଧିଅ
ସୁନା ଦେହ ନ କରିବୁ ଚୂନା,
ଖୋଲା – ମନ କେବେ ନ କରିବୁ ଊଣା॥ -୪

ହସ ମଜା  କଥା କହି
ସହଳ ଯିବୁ ରେ ଶୋଇ
ନ ଦିଶୁ ସେ ଅଲୋଡା ସପନ,
ସଦା -- ସୁଖଭରା ହେଉ ତୋ ଜୀବନ॥ -୫

ସକାଳୁ ଉଠିବୁ ଯେବେ
ମନ ହେଲେ କେବେ କେବେ
ମୋ ସାଥେ ଗପିବୁ ବସି ବସି;
ତୋତେ – ଢାଳିଦେବି ଆଶିଷ-ସରସୀ॥ -୬

ଲଲାଟନ୍ଦୁ କବି ୦୧-୦୯-୨୦୧୭ (୧୫-୦୩)

# ଲିଭି ଲିଭି ଚାଲିଛି ସଳିତା 22

ଆସ -- ଆସ ମୋରସାଥୀ
ମାଡି -- ମାଡି ଆସେ ରାତି
ଏକା -- ଏକା କି ମୁଁ ଲେଖିବି କବିତା ଗୋ ?
ମୋର – ଲିଭି ଲିଭି ଚାଲିଛି ସଳିତା ଗୋ !-୧
ସଞ୍ଜ -- ଗଲା ବୁଡିବୁଡି
ଘର -- ଦେଲି ଝାଡିଝୁଡି
ଏବେ – ବସିବି ମୁଁ ପଥ ଚାହିଁ ଚାହିଁ ଗୋ,
ଦୂରୁ -- ଅତିଥି କେ ଆସିଲେ କି ନାହିଁ ଗୋ ! -୨

ଗଲା -- ଖରା ଝାଇଁଝାଇଁ
ନିଶା -- ଡାକେ ସାଇଁସାଇଁ,
ଏବେ – ଡର ମାଡେ ଦେଖି ନିଜ ଘର ଗୋ;
ଆପ- ଣାର ଲାଗିଲେଣି ପର ପର ଗୋ ||-୩

କବି- ତାର ଗାରେ ଗାରେ
ତାନ- ପୁରା ତାରେ ତାରେ

ବିନ୍ଦୁ -- ବିନ୍ଦୁ ବହେ କାହା ଅଶ୍ରୁଧାରା ଗୋ;
ନିଆଁ – ଲାଗି ଯାଏ ମରମଟା ସାରା ଗୋ ||-୪

ଏଇ -- ଦାଣ୍ଡ ବାରଣ୍ଡାରୁ
ଦୂରୁ -- ଦିଶେ ଦେବଦାରୁ
ଗୋଟେ – ଭୂତ ପରି ଡାକେ ହାତ ମେଲି ଗୋ,
ଦଣ୍ଡେ -- ଡେରି କଲେ ଚମ ଦେବ ଛେଲିଗୋ ||-୫
କହ -- କାହା ଭରସାରେ
ଘନ -- ଘୋର ବରଷାରେ
ଦୂର -- ଦେଶେ ଯିବି ଏକା ଦିଅଁ ଦେଖି ଗୋ,
ଦେବ -- ଅଧାରୁ ମୋ କବିତା କେସଲେଖି ଗୋ ? -୬

ଦିଅ -- ଦିଅ ଟିକେ ଘିଅ
ମୋ ସ- ଳିତା ତେଜି ଦିଅ,
ରାତି -- ଥାଉଁ ଯିବି, ଲେଖା ଦିଏଁ ସାରି ଗୋ,
ସାଥେ -- ଯିବ କିଏ ? ହେବି ପଥଚାରୀ ଗୋ !-୭
ଲଲାଟେନ୍ଦୁକବି୨୦୧୭୦୮୩୧-୦୧୫୬

## ସମସ୍ତଙ୍କର ଆତ୍ମା ନ ଥାଏ 23

ଗାଈକୁ ମାଇଲା ଯିଏ ସିଏ ତ ନିଷ୍ଠୁରଟିଏ,
କେବେ – ମାରିବାକୁ ଦେବି ନାହିଁ ଗାଈ;
ଛେଳି – ମାରି ଖାଅ, ଆତ୍ମା ତାର ନାହିଁ ||-୧

ପାଠପଢା ଝିଅପୁଅ କିଏସେ ପଢିଛ କୁହ
କେଉଁ – ବୈଜ୍ଞାନିକ ବହିରେ ଲେଖିଲେ,
ଛେଳି – କୁକୁଡାର ଆତ୍ମା ଦେଖିଥିଲେ ||-୨

ଗାଈ ପୂଜି ନିତିନିତି ଜାଣ କି ବଳଦସ୍ଥିତି?
ତାକୁ – ଛୋଟ ବେଳୁ କରି ନପୁଂସକ;
ନେଇ – କ୍ଷେତରେ ମୁଁ କରିଛି ସେବକ ||-୩

ଯିଏ ଦେଖିଅଛ ମାଛ ଦେଖିଥିବ ଆଗପଛ

ତାର – ଦେହ ସାରା ଭରିଅଛି କାତି;
ପଥ -- ନାହିଁ: ଆତ୍ମା ପ୍ରବେଶି ନାହାନ୍ତି ||-୪

ଛେଳିକୁକୁଡାଠୁ ମାଛକଙ୍କଡାଦି ଯା' ପାଉଛ
ସବୁ – ଧରିମାରି ଖାଅ ନିର୍ବିଚାରେ;
ଆତ୍ମା -- ନାହିଁ, ପୀଡା ଲାଗିବ କାହାରେ ?-୫

ଲଲାଟେନ୍ଦୁକବି ୨୦୧୭୧୦୧୨୨୦୧୭

# ତୋଳି ଦିଅ ସ୍ୱପ୍ନ ନଗରୀ 24

ଏମୋର ଦ୍ୱାରସେପାରେ
ତିମିର ଅନ୍ଧକ୍ଷପାରେ
ଶୁଭୁଛି ସୂକ୍ତତୁମରି;
ତନ୍ଦ୍ରା ଯାଏମୋଭାଜି
ଶ୍ୱସନ ଦଂଶନସାଜି
ଜଳାଏ ମୋବିଭାବରୀ ||
ଆସଆସ ସନ୍ନିଧେବସ ତୋଳିଦିଅ ସ୍ୱପ୍ନନଗରୀ;
ପ୍ରୀତିଧାରେ ସଙ୍ଗୀତ-ସାରେ ଭରିଦିଅ ରିକ୍ତଗଗରି ||-୧||

୨୦୧୭୧୦୧୦୧୮୩୨

ପ୍ରଭାତେ ମନ୍ଥର ବାତେ
ଅଳସ ପୟର ପାତେ
ଭ୍ରମିବା ସିନ୍ଧୁ ସେ ପାରି;
ଦେଖିବା ଦଉେୟ-ଧନୁ,
ଅଧୀରା କର୍ବୁର-ତନୁ,
ମେଦୁର ଅମ୍ବୁଦ-ବାରି ||
ଆସ ମିତ ମୋ ସହିତ ବନ ଗିରି ଶୃଙ୍ଗ-ଶିଖରୀ;
ନୀପ ଫୁଲେ ମଞ୍ଜରୀମାଳେ ସାଜିଦେବି କୃଷ୍ଣକବରୀ ||-୨||

ଦିବସ ପର୍ଯ୍ୟବଶେଷେ
ମୁଦି ତା' ମୁଗ୍ଧ ପଳାଶେ
ପ୍ରସୂତ ପଡିବ ଝରି;
ଆଟୋପ ଉତ୍ସାଦ ଗତେ
ତପନ ଆଗ୍ନେୟ ରଥେ
ଚଳିବ ମୃତ୍ୟୁ ଆଦରି ||
ମୋ ଜୀବନ ଉତ୍ସୁର ହେଲେ ଯିବି ମୁଁ ଏ ଜନ୍ମ ସେ ପାରି;
ଆଶ୍ଳେଷିବ ନିଷ୍ତ୍ରମ ବେଳେ, ନ କାନ୍ଦିବ ବକ୍ଷବି ଦାରି ||-୩||

ଲଲାଟେନ୍ଦୁକବି
୨୦୧୭୧୦୧୧୦୧୨୪
କ୍ଷପା= ରାତି; ସୂକ୍ତ= ମିଠାକଥା; ଶ୍ୱସନ= ଶ୍ୱାସ; ସିନ୍ଧୁ= ନଦୀ; ଦଣ୍ଡୋୟ= ଇନ୍ଦ୍ର; ଅଧୀରା= ବିଜୁଳି; କର୍ବୁର= ସୁନା; ନୀପ= କଦମ୍ବ; ପଳାଶ= ପାଖୁଡା; ପ୍ରସୂତ= ଫୁଲ; ଆଟୋପ= ଗର୍ବ; ଉତ୍ସାଦ= ଲୋପ; ଉତ୍ସୁର= ସମାପ୍ତି; ଆଶ୍ଳେଷ= ଆଲିଙ୍ଗନ

## ଖାଇ ନେଇ ଯାଅ ଶୋଇ 24

ଏବେ ଖାଇ ସାରି ଭାତ ତରକାରୀ
ଘରକୁ ଫେରିଲି ଲିଲୁ;
ଖୋଜି ଖୋଜି ମୋତେ ` ଶୋଇଲୁ କି ସତେ
କହ କେମିତିକା ଥିଲୁ ॥ ୧ ॥

ଖାଇଲୁ କି ନାହିଁ ରହିଛୁ କି ଚାହିଁ
ଶୋଇବୁ ଯାପରେ ଖାଇ ?
ଏବେତୁ ଖାଇ ନେ, କି ଲାଭଏଇନେ
ଉଜାଗରେ ବସିଥାଇ ॥ ୨ ॥

ଲେଖୁଛି ତୋ ଲାଗି କେତେ ଲାଗି ଲାଗି
ତୋ ମିଠା କଥା ବଖାଣି;
ସାରି ପାରୁ ନାହିଁ: କାଗଜ କୁ ଚାହିଁ
ଭୁଲି ମୁଁ ଯାଏ କାହାଣୀ ॥ ୩ ॥

ରାତି ଆସେ ମାଡି ଅନ୍ତର୍ଜାଲ ଛାଡି
ଆଖି ମୁଜି ଶୋଇପଡ;
ରାତିଟା ପାହିଲେ ସୂରୁଜ ଉଇଁଲେ
ଉଠିବୁ ତୁ ଧଡପଡ ॥ ୪॥

ସରି ନାହିଁ ପାଠ ଏବେ ବି ତୁ ଚାଟ
ପଢୁଥିବୁ ତୋର ବହି;
ଖାତା ବହି ଥୋଇ ପଡିବୁନି ଶୋଇ
'କାଲିଠୁ ପଢିବି'କହି ॥ ୫॥
କାଲି ବୋଲି କିଛି ଅଦୃଶ୍ୟ ରହିଛି
ଅଦୃଶ୍ୟରେ ରହିଥାଏ;
କେବେ ଆସି ପାଶେ ଧରା ଦେବନି ସେ,
ଦେଇ ନାହିଁ ଆଜି ଯାଏ ॥ ୬॥

କଲେ 'କାଲି କାଲି' ବେଳ ଯିବ ଚାଲି,
ଖେଳ ପଡିଥିବ ଅଧା;
ଆଜିଠୁ ଓଲଟା କାଲିର କାମଟା
ସାରି ଦେଉଥିବୁ ସଦା ॥ ୭॥

କାଲିର କାମକୁ ଖାଲି କରି ତାକୁ
ଛୋଟିଆ ହସଟେ ଦିଅ;
ହସ ରଖି ମୁଖେ ଦିନ ବିତା ସୁଖେ
ଭଲରେ ରହିବ ଦିହ ॥ ୮॥

ଥାଉ ଏତିକିରେ ଆଉ ଏ ରାତିରେ
ଲେଖିବାକୁ ନାହିଁ ବାକି;
ରାତି ସରିଲାଣି, ଦେଲି ଆଶୀର୍ବାଣୀ
ପଢିବୁ ଖୋଲିଲେ ଆଖି ॥ ୯॥

ଲଲାଟେନ୍ଦୁକବି ୨୦୧୭୧୦୦୯୦୨୪୯

## ନ ଆସ ଶାବଣ ମାସେ 25

କୋତରା ଦଦରା ଘରେ ମୋର ଭରା ଗଗରା ଗଗରା ନୀର;
ବାହୁନା ନମୁନା କହିବୁ ପୁରୁଣା ଘଷରା ଘଷରା ଗିର ||-୧||

ପଚର ପଚର ଏ ଘର ଭିତର ଚପର ଚପର ଚାଳ;
ଚୁଲୀରେ ସରସୀ ସାଲ ଯାଏ ଧସି ଚାଳକୁ ନିଅଣ୍ଟ ପାଳ ||-୨||

ଅଗଣାଟା ସାରା ଛୁଟି ଚାଲେ ଧାରା ଅସରା ଅସରା ପାଣି;
ପାଣି ତଳେ ପାଦ ଦେଲେ ପରମାଦ ଖସରା ଖସରା ଜାଣି ||-୩||

ଏ ସନ ଶାବଣ ସାରି ଦେଲା ଧନ ଗଲା ସନଠାରୁ ବଳି;
ଥିଲେ ଏବେପାଶେ ଦଦରା ନିବାସେ ଦଣ୍ଡେ ନପା ରନ୍ତୁ ଚଳି ||-୪||

ମନ ଖାଲି କହେ ଏ ଘରେ କେ ରହେ ଦୋହଲୁଛି ଝଟା କୁଟା,
ପାଦ ବୋଲି କାହିଁ ଥାପିବାର ନାହିଁ, କାଦୁଅ ମୁଠାକୁ ମୁଠା ||-୫||

କି ଲେଖିବି ଆଉ ଏତିକି ଏ ଥାଉ ସୁଖେ ତୁ ଥା ପରବାସେ;
ବିହି ଦେଇ ଥାଉ କୋଟି ପର ମାୟୁ (ଫେରି) ନ ଆସ ଶାବଣ ମାସେ ||-୬||

ଲଲାଟେନ୍ଦୁକବି ୨୦୧୭୧୦୦୮୧୮୦୪

## ଢାଳି ଦେଲି ଶୁଭାଶିଷ 26

କେଞ୍ଚେଟେ ତୁ ହେଇଅଛୁ କହିବି ମୁଁ କିସ
ବଡ ଜମା ନୋହୁ ମାମା, ଛୋଟିଆ ମଣିଷ ||

ପାଠ ପଢି ଯାଅ ଚଢି ସୋପାନ ସୋପାନ;
କହୁଥିବେ ଦେଖି ସର୍ବେ ଏ କାହା ସନ୍ତାନ ?

ସ୍ୱଜନ କି ଗୁରୁଜନ କିଏସେଏହାର
କିଏ ଥିଲା ଧରେଇଲା କବିତାର ଗାର ?

କାଲି ଯିଏ ଡରୁଥାଏ ଛାଗଳ ମହିଷ

ଏକି ସେହି	କଥାକହି	ଛୋଟିଆ ମଣିଷ ?

ଭଲ ପଢି	ଡିଗ୍ରୀ ଧରି	କରିଯା ଚାକିରୀ
ଖୁସି ହେଇ	ଭଗ୍ନୀ ଭାଇ	ପେଟ ଯାଉ ପୂରି ||

କାଲି ପରି	ସବୁ ସରି	ଖୋଜା ହେବ ବର;
ଭାଗ୍ୟେ ଥିଲେ	ଦେଖିବି ରେ	ତୋର ବାହାଘର ||

ଭଲ ବର	ଶାଶୁ ଘର	ମିଳି ଯାଉତୋ ତେ;
ମନେ ଥିଲେ	ବେଳେ ବେଳେ	ଚିଠି ଦେବୁ ମୋତେ ||

ଢାଳି ଦେଲି	ମନ ଖୋଲି	ସବୁ ଶୁଭାଶିଷ;
ତୋ ମୁଖରୁ	ହସ ଝରୁ,	ଛୋଟିଆ ମଣିଷ !!

ଲଲାଟେନ୍ଦୁକବି	୨୦୧୭-୧୦-୦୪-୧୯୩୮

# ନୂଆ ନୂଆ ଶିଖି ଯାଅ 27

ସେହି ଏକାପରି	ଲେଖି ଲେଖି କରି
ସରିବ କି ଜୀବନଟା ?
ଏବେଠାରୁ ମନ	ଦେଇ ଶିଖ ଧନ
ଶଇଳୀ ଗୋଟାକୁ ଗୋଟା |	-୧
ଦୃଢ କରି ମନ	ସୋପାନ ସୋପାନ
ଝ'ଅଟ ଝ'ଅଟ ଉଠ;
ଅଳପ ରଖିଛି	କଉଶଳ କିଛି,
ଏ ଜୀବନ ଥାଉଁ ଲୁଟ |	-୨
ହାତ ଅଛି ଖୋଲା	ଭରି ନିଅ ଝୋଲା
ଦେଲା ବାଲା ଅଛି ବସି;
ନେବ କି ନ ନେବ	ରାଗି ଦୂର ହେବ ?
ନେଲେ ଦେବି ହସି ହସି |-୩

ଲଲାଟେନ୍ଦୁ କବି ୨୦୧୭୧୦୦୩-୨୧୩୭

# ବର ଦିଅ ସରସ୍ୱତି !

**28**

ଶାବ୍ଦୀ-ସରସ୍ୱତି !
ବାଗ୍‌ଦେବୀ-ଭାରତି !
ଆରତ-ଆରତି
ଘେନ ମା ଥରେ;
ଶକ୍ତି ଦିଅ ମାତଃ
ଭକ୍ତିଭରା ଗୀତ
କରିବି ରଚିତ
ଦିନ ମାତରେ ||-୧||
ବିଧିବଧୂ ଇରା
ବାଣୀ-ବୀଣାସ୍ୱରା
ଉଦ୍ଗୀତମୁଖରା
ଅମୃତ ଝରା
ଗଳେ ଅବତରି,
ଅବା କର ଧରି,
ବର ଦିଅ ଭରି
ସିରା-ପ୍ରସିରା ||-୨||
ଆଶ୍ରା କରି ତୋର
ପୁଣ୍ୟ ଶ୍ରୀପୟର
ଅଧମ କୁମର
ବସିଛି ଲେଖି,
ରହି ପାଶେ ପାଶେ
ପରାଣ ପରାସେ,
ସର୍ବ ବିପର୍ଯ୍ୟାସେ
ରକ୍ଷ ନିରେଖି ||-୩

........................
ଲଲାଟେନ୍ଦୁକବି **30-09-2017**

# ପୂଜା ଉପହାର 29

ପୂଜା ଉପହାର କି ଦେବି
ତୁ ତ ରହିଲୁ ଦୂରେ।
ତୋ ବଦନ ଥରେ ଦେଖିବି
ବୋଲି ଏ ମନ ଝୁରେ ॥୧
ଋଣ ଭାରେ ମୋତେ ରଖିଛି
ତୋର ଶରଧା ଖିଏ
ତୋତେ ଦେବି ତୋଳି ଭାବିଛି
ଲେଖି କବିତାଟିଏ ॥୨
ଲେଖିବି ତୋ ଲାଗି କି ଗୀତ
କିଛି ନ ପାରେ ବୁଝି
ରାତି ନ ପାହୁଣୁ ଏବେ ତ
ଯାଏ ନୟନ ବୁଜି ॥୩
ଥକା ଥକା ଲାଗି ଯାଏ ରେ
ରାତି ଥାଉଣୁ ବାକି;
କଲମ ଧରିବା ମାତରେ
ଲାଗି ଯାଏ ମୋ ଆଖି ॥୪
ପାଶେ ଥିଲେ କହି ଦିଅନ୍ତି
ଧନ, ନିଅନ୍ତୁ ଟିପି;
ନିଦ ଝାଙ୍କି ଦେଲେ ଦିଶନ୍ତି
ନାହିଁ ଛୋଟିଆ ଲିପି ॥୫
ଏକଇ ରାତିକେ ପାରୁନି
ଏଣୁ ତୋ ଗୀତ ସାରି;
ବିତୁ ଯେତେ ରାତି, ଛାଡୁନି
ମୁଁ ବି ନ ଯାଏ ହାରି ॥୬
ଖୋଜି ମୁଁ ପାରୁନି ଶବଦ
ଅଭିଧାନ ମେଲାଇ,
ଭାଷା ବିନା ମିଠା ଦରଦ
କାହୁଁ ହେବ ସଜାଇ ॥୭
ଲଲାଟେନ୍ଦୁକବି ୨୦୧୭୦୯୩୦-୨୦୩୩

## ସହଜ ସରଳ ବାଣୀ (୦୦୧) 30

ଆନ କଥା ଭୁଲି ଯିଏ ସଦା ସ୍ୱାର୍ଥ କରେ
ରହିଥାଏ ସିଏ ସଦା ଘନ ଅନ୍ଧକାରେ ||୧
ନିଜକୁ ବିସର୍ଜି ଯିଏ ପରହିତ କରେ
ତା' ଜୀବନ ଗତି ଅନ୍ଧକାର ଘୋରତରେ ||୨
ଯେଉଁ ସ୍ୱାର୍ଥ ସମ୍ପାଦନେ ଅନ୍ୟର କଲ୍ୟାଣ,
ତାହା ସହ କର ପର ସେବା ଆଚରଣ ||୩
କାନ୍ଥକୁ ସମର୍ଥ ଇଟା ନିଜେ ଥାଏ ପୋଡି,
ଅନ୍ୟଥା ଭାଙ୍ଗିବ ଇଟା; କାନ୍ଥ ଯିବ ପଡି ||୪
ସମାଜର ହିତ ଯେବେ ସାଧିବାକୁ ମନ ;
ନିଜ ଶକ୍ତି, ଜ୍ଞାନ ବୁଦ୍ଧି କିମ୍ପାଁ ବଢାଉନ ||୫
:-- ଯଜୁର୍ବେଦ (ଲଲାଟେନ୍ଦୁକବି )

## ସହଜ ସରଳ ବାଣୀ – ୦୦୨ 31

 କ୍ରୋଧ ହେତୁ ଶାସ୍ତି ଦେବ
କିଏ କିମ୍ପାଁ ଧନ ?
କ୍ରୋଧ ହିଁ କରିବ ତୁମ
ନିଗ୍ରାହ ବିଧାନ ||
:-- ବୁଦ୍ଧ
ଲଲାଟେନ୍ଦୁ କବି
ନିଗ୍ରାହ= ଶାସ୍ତି

## ସହଜ ସରଳ ବାଣୀ-୦୦୩ 32

ପରଠାରୁ ନର ଯେତେ ଖୋଜେ ଆକାଙ୍କ୍ଷିତ
ଅନୁପାତେ ଉପଗମେ ହୁଏ ଅବାଞ୍ଛିତ ||
(:-- ସ୍ୱମୀରାମସୁଖଦାସ )
ବିତରଣଲଲାଟେନ୍ଦୁକବି

# ସହଜ ସରଳ ବାଣୀ- ୦୦୪ 33

"ସ୍ମରିବାକୁ ବିଶ୍ୱାଧାରେ    ବେଳ କାହିଁ ମୋ ଜୀବନେ ?
ଜାଣିନ ମୁଁ ଯାତନାରେ    କିଭଳି ପୀଡିତ ଜଣେ ||"-୧
ଏ ଭଳି ଯେ କହେ କଥା    ନିଶ୍ଚେ ସିଏ ମିଥ୍ୟାଚାରୀ;
ଆଚରି ମିଥ୍ୟା ଧୃଷ୍ଟତା    ଖୋଜେ ଅନୁକମ୍ପା ଖାଲି ||-୨

ଯାନ ଧରି କଲେ ଯାତ୍ରା    ସାଜି ନିଜେ ତା' ଚାଳକ;
କି ଭାବେ ସେ ରାତି ସାରା    ପଥ ଦେଖେ ଅପଲକ ?-୩
ରେଖାଯାନ ଯାତ୍ରା-ପତ୍ର    ଲାଗି ଯେବେ ଧାଡି ହୁଏ
ନିରତେ କି ପରି  ଦେଖେ    ବାହାରୁ ପଶିଲା କିଏ ?-୪

(ଲଲାଟେନ୍ଦୁକବି )

# କର୍ତ୍ତବ୍ୟ 34

ବିଶ୍ୱ ଯଦି ଯାଏ ଭାସି
    ଆକୁଳ କ୍ରନ୍ଦନେ,
ଏକାକୀ ମୁଁ ଥିବି ବସି
    କର୍ତ୍ତବ୍ୟ ସାଧନେ ||
    :-- ବିଶ୍ୱକବି

# ଘାରିବ କର୍ବରୀ ଫେରି ଯା ଘରେ 35

==============================
ପର୍ବତ ଶିଖରେ    ସୈକତ ଶୀକରେ
    ଚିକୁର ନିକର – କରକେ କରି
କେ ତୁମେ ଦୁକୁଳା    କୁନ୍ତଳ ମୁକୁଳା
    ମଉଳା କଳିକା -    ବସିଚ ଧରି ||-୧

ବ୍ୟଥିତବଦନା    ସ୍ତିମିତନୟନା
    ବିଧୃତକ୍ରନ୍ଦନା -  ଶୂନ୍ୟଲୋକନା
କହ କି ଆଶାରେ    କାହା ଭରସାରେ
    କି ହାନ ସୁମରି -    କର ଶୋଚନା ||-୨

ତ୍ୱରିତ ମରୁତ- ତାଡିତ ତଡିତ
	ବିପଥେ ଅପଥ - ବରୁଥ ଗତେ,
ପଥର ପିହିତେ ଲୋହିତ ରୋହିତେ
	ଉହିତ ଈହିତ - ଲେଖୁଛ ସତେ ? ||-୩

ଦର୍ଶନ ବିସ୍ତାରି ପ୍ରେକ୍ଷ ବାରେ ନାରୀ
	ଦୂରେ ଧୂସରିତ - ପରିଧି ପାରେ
ତିମିର କବରୀ ବିସ୍ତାରି କର୍ବରୀ
	ଖରେ ଆସେ ଘେରି - ଫେରି ଯା ଘରେ ||-୪

ଲଲାଟେନ୍ଦୁକବି୨୦୧୭୦୯୨୮-୦୧୧୧

ଶୀକର= ଜଳକଣା; ଚିକୁର= କେଶ; ନିକର= ଥାକ, ଗୁଚ୍ଛ; କରକ= ହାତ; କୁନ୍ତଳ= ମଥାରକେଶ; ସ୍ତିମିତ= ପ୍ରଶାନ୍ତ, ନିଶ୍ଚଳ; ବିଧୃତ= ( ଚାପି) ରଖାଯାଇଥିବା; ଲୋକନ =ଅବଲୋକନ; ହାନ= କ୍ଷତି, ନାଶ; ତ୍ୱରିତ= ବେଗବାନ୍; ମରୁତ= ବାୟୁ; ତାଡିତ= ବିତାଡିତ; ତଡିତ୍= ବିଜୁଳି; ବିପଥ= ଭିନ୍ନମାର୍ଗ; ଅପଥ= ପଥଭ୍ରଷ୍ଟ;ବରୁଥ= ସମୟ; ପିହିତ= ଲୁଚିଥିବା; ରୋହିତ= ରକ୍ତ; ଉହିତ= ପରିବର୍ତ୍ତିତ; ଈହିତ= ବାଞ୍ଛିତ; କର୍ବରୀ= ରାତି

## ମୁଁ ଅଛି କୁଶଳେ 36

କି ଦେଖିଲା ଆଖି ଡୋଳା ଚେତିଛୁ ଦୁହିତା
ଦଶଟାରେ ମେସେଞ୍ଜରେ ଦେଇଛୁ ବାରତା ||-୧

ପୁତ୍ର ସାଥେ କଥା ପଦେ ହେଇ ନାହୁଁ ବୋଲି;
ନିଦ ନାହିଁ ଚାହିଁ ଚାହିଁ ଆଖି ଅଛୁ ଖୋଲି ||-୨

ଭାଳ ନାହିଁ କନ୍ୟା ମୁହିଁ ରହିଛି କୁଶଳେ,
ଯାଅ ଶୋଇ ମୁହଁ ଥୋଇ ଜନନୀଙ୍କ କୋଳେ ||-୩

ରାତି ପାହି ଗଲେ କହି ଦେବୁ ସୁପ୍ରଭାତ
ମୋର ଶୁଣି ଶୁଭ ବାଣୀ ଖୁସି ହେବୁ ମାତଃ ||-୪
ଲଲାଟେନ୍ଦୁ କବି ୨୦୧୭୦୯୧୭-୨୩୨୮

## ଗଦ୍ୟରୁ ହିଁ ଆସିବ କବିତା 37

କିଛି କିଛି ଲେଖ ଅନୁଚ୍ଛେଦ କରି,
ସେଥିରୁ ଆସିବ କବିତା ବାହାରି ।
ମନ ଇଚ୍ଛା ଯାହା ଲେଖିବାର ଲେଖ,
କବିତା କି ଭଳି ହୁଏ ତାହା ଦେଖ ।
ପାଖରେ ବସିଲେ ଶିଖି ଶିଖି ଯିବୁ
ଦୂରେଇ ତୁ କିଆଁ ରହୁଛୁ କହିବୁ ।
ମୁଁ ତ କେବେ ତୋତେ ଭାବି ନାହିଁ ପର;
ବୃଥାଟାରେ ମନେ ରଖିଅଛୁ ଡର ।
ଯାହା ଲେଖିଥିଲି ଚାଟ୍-ବକ୍ସ୍ ଭିତରେ
ଡିଟିପି କରି ମୁଁ ଦେଲି ତୋ ହାତରେ ।
ପଢିଦେଖ ଏବେ କି ଅଛି ପ୍ରଭେଦ ?
ଏ ବି ତ ଗୋଟିଏ ଛୋଟ ଅନୁଚ୍ଛେଦ ।
ମନେ ମୋର ଯେଉଁ ଅନୁଚ୍ଛେଦ ଥିଲା
ସେଇଥିରୁ ଏଇ କବିତା ଆସିଲା ।

ଲଲାଟେନ୍ଦୁ କବି ୨୦୧୭୧୦୦୩

## ଦାନଶୀଳ ଭିକ୍ଷୁ 38

ଦେଖି ଆମ ପଥ-ପ୍ରାନ୍ତେ ଭବିଷ୍ୟ-କଥନ
ଭିକ୍ଷୁ ଦିଏ ଭିକ୍ଷୁ ହାତେ ରାଜ ସିଂହାସନ ।।

ଆସ୍ୟ ଗ୍ରନ୍ଥ କବି କଥା ଭାଳି ଭାଳି ବସି;
ସେବେଳୁ ମୋ ପେଟ ବ୍ୟଥା ତୁଚ୍ଛା ହସି ହସି ।।

ଆସ୍ୟ = ମୁଖ = ଫେସ୍; ଗ୍ରନ୍ଥ= ବହି = ବୁକ୍; ତେଣୁଆସ୍ୟଗ୍ରନ୍ଥ= ଫେସ୍‌ବୁକ୍

ଲଲାଟେନ୍ଦୁକବି
୨୦୧୭୦୯୧୭-୧୨୦୪

# ଅନ୍ଧ ଅନ୍ଧେ କରୁଥିଲେ ପଥ-ପ୍ରଦର୍ଶନ 39

ମହାମନା ଲେଖିଥିଲେ "ଜଗତେ କେବଳ,"
ନ ଥିଲେ କି ମାତୃଭୂମି-ସାହିତ୍ୟ-ବତ୍ସଳ ? ||-୧

ଅନ୍ଧ ଅନ୍ଧେ କରୁଥିଲେ ପଥ-ପ୍ରଦର୍ଶନ.
ଅସମ୍ଭବ, କେବେ ତାକୁ ଦେବି ପ୍ରୋତ୍ସାହନ ||-୨

ଅଜ୍ଞ ଅଜ୍ଞେ କରୁଥିବ ଜ୍ଞାନ ବିତରଣ
ନିରବେ ଦେଖି ସହିବା ଅହିତ ଲକ୍ଷଣ ||-୩

ଶିକ୍ଷାର୍ଥୀର ଯିଏ ଚାହେଁ ନିଶ୍ଚିତ କଲ୍ୟାଣ,
ଅପାତ୍ରେ ବରିଲେ ଗୁରୁ କରିବ ବାରଣ ||-୪

ଅପାତ୍ରୁ ଶିଖିଲେ ବଢୁଥିବ ଅପାତ୍ରତା;
ତାକୁ ପ୍ରୋତ୍ସାହନ ଦାନ ନୁହେଁ ଆତ୍ମୀୟତା ||-୫

ଅଶିକ୍ଷାକୁ ପ୍ରସଂଶିଲେ ପିତା ବି ବଇରୀ,
ମାତୃଜଙ୍ଘ ଗୋ-ବତ୍ସର ସ୍ତମ୍ଭ ହେବା ପରି ||-୬

ଲଲାଟେନ୍ଦୁ କବି ୨୦୧୭୦୯୧୭-୧୬୨୮

# ପାଠ ପଢି ପଢି 40

ବରଷ ବରଷ ଧରି ପାଠ ପଢି ପଢି;
ଚାତୁରୀ ସହିତେ ଟାଉ- ଟରି ଗଲା ବଢି | -୧

ନଈ ସରି ଗଲା ମରି ମଣିଷ ପଣିଆ;
କେତେ ସୁନା କେତେ ଚୂନା ଜାଣେ ସେ ବଣିଆ | -୨

ନ ଜାଣୁ ସେ, ମୋର ପାଖେ ଅଛି ମୋ ହିସାବ;
ବିବେକଟା କରେ ଥଟ୍ଟା କି ଦେବି ଜବାବ | -୩

ନୂଆ କରି ପୋଥି ଧରି ପଢ଼ିବି କି ପାଠ;
କଲମରେ କାଳି ଭରି ହେବି ନୂଆ ଚାଟ ? -୪

ସ୍ୱର ବର୍ଣ୍ଣ ପର ବର୍ଣ୍ଣ ଫଳା ଯୁକ୍ତାକ୍ଷର
କେଜି ଧରି ପିଜି କରି ଉପାଧି-ଉତ୍ତର ? -୫

କଳା ଲେପି ମାଳା ଜପି ପାରିବ କି ମନ ?
ମଥାରେ କି ଯିବ ଢୁକି ଏବେ ବିଦ୍ୟାଧନ ? -୬

ବିଚାରୁଛି ପୋଛି ପାଛି ମନକୁ ରଖିବି;
ପାଠ ଯାହା ଅଛି ତାହା ଭୁଲି ଭୁଲି ଯିବି । -୭

ମନକରେ ହେବି ଥରେ ଅବୋଧ ବାଳକ;
ଯିବି ତହିଁ ନେବେ ଯହିଁ ଭୁବନପାଳକ । -୮

ଥକି ଗଲେ ତାଙ୍କୋ କୋଳେ ପଡ଼ିବି କି ଶୋଇ ?
ଚେତା ଥାଉଁ ଖେଳନା ମୁଁ ଦେଇଥିବି ଥୋଇ ! -୯

ଲଲାଟେନ୍ଦୁକବି
୨୦୧୯୦୯୧୮-୦୦୨୨

# ଯୌବନ 41

ନର ଜନ୍ମେ ଯଉବନ ଅମୂଲ୍ୟ ରତନ;
ସୀମାହୀନ ଶକତିର କୋଷନିକେତନ ||-୧

କ୍ଷଣିକ ଜୀବନ ମଧ୍ୟେ କ୍ଷଣିକ ଯୌବନ,
ସେ ଥିରେ ସକଳ ଶୁଭ କରସମ୍ପାଦନ ||-୨

ଯଉବନ ଗଲେ ଥରେ ଆସେ ନାହିଁ ଫେରି,
ତାର ଶୁଭ ନିୟୋଜନେ କର ନାହିଁ ଡେରି ||-୩

ରଖି ଚିତ୍ତେ ଅବିରତ ହିତାହିତ ଜ୍ଞାନ,
ଲକ୍ଷ୍ୟ ପଥେ କରୁ ଥାଅ ପଦ ସଞ୍ଚାଳନ ||-୪

| | |
|---|---|
| ଦୁଃସହ ଏ ଜନ୍ମ-ମୃତ୍ୟୁ | ତାଡନ ପ୍ରବଳ, |
| ଆତ୍ମାନୁଭବରେ କାଟି | ଦିଅ ସେ ଶୃଙ୍ଖଳ ||-୫ |

| | |
|---|---|
| ଚେର ଅଛି ମୂଳ ଅଛି | ଢାଳୁ ଥାଅ ଜଳ; |
| ମହୀରୁହ ରହି ରହି | ଦିନେ ଦେବ ଫଳ ||-୬ |

| | |
|---|---|
| ହୁଅ ଶୁଭ କର୍ମ ଶୁଭ | ଚିନ୍ତନ ପୋଷକ: |
| ଆତ୍ମାବୃକ୍ଷେ ଧ୍ୟାନ ଜ୍ଞାନ | ଶ୍ରଦ୍ଧା ଉର୍ବରକ ||-୭ |

ଲଲାଟେନ୍ଦୁ କବି    ୨୦୧୭୧୦୨୭

## ଧନ୍ୟା ସୁକନ୍ୟା 42

| | | |
|---|---|---|
| ଧନ୍ୟା ସୁକନ୍ୟା | ଅବର୍ଣ୍ଣ୍ୟା ଅନନ୍ୟା | |
| ତୋ ରୂପବନ୍ୟା | ବିପନ୍ନ୍ୟ ଅପଣ୍ୟା | ||୧|| |
| କଲ୍ମଷଶୂନ୍ୟା | ପ୍ରୟତତ୍ୱପର୍ଣ୍ଣ୍ୟା | |
| ଜଗଦ୍ବରେଣ୍ୟା | ସାଦନ୍ୟା ଆରଣ୍ୟା | ||୨|| |
| ସୌମ୍ୟା ସୁରମ୍ୟା | ଶତଦୋଷକ୍ଷାମ୍ୟା | |
| ଦେବାନାଂକାମ୍ୟା | ମୁନେଃ ମନୋଗମ୍ୟା | ||୩|| |

| | | |
|---|---|---|
| ସାନ୍ଦ୍ରଚିକୁରା | ପୁଟ ଚନ୍ଦ୍ରଝରା | |
| ଅମୃତସ୍ୱରା | ଦୟାଦ୍ୟୁତିଧାରା | ||୪|| |
| କମ୍ର-ଅଧରା | ମିତଶାନ୍ତଗିରା | |
| ସିଞ୍ଚନ୍ତୁ ସର୍ବେ | ସୁ-ଆଶୀର୍ବଚନମ୍ | ||୫|| |

ଲଲାଟେନ୍ଦୁ କବି
୨୦୧୭୦୯୧୨-୧୬୩୦




## ହାତ ଧରି କରେ ମୁଁ ମିନତି 43

ଲେଖିବି ଲେଖିବି ବୋଲି ବୟସ ବିତାଇ ଦେଲି
ଏବେ ଯା' ମୁଁ ଲେଖିଲି କବିତା
କବିତାରେ ସିଏ କି ଗଣିତା ! ୧||

ଏବେ ଯା ବସିଲେ ଲେଖି ଅକ୍ଷର ଆଶୟ ଦେଖି
ଚାଲି ଥାଏ ଅଟକି ଭାବନା;
ହଜି ଯାଏ ଅଧେ ସମ୍ଭାବନା || ୨||

ଦିଅ ମା କରୁଣା ଭିଉ, ଲିଖନରେ ଥାଉ ଚିଉ,
ଲେଖନୀରେ ସ୍ତିମିତ ଶକତି,
ହାତ ଧରି କରେ ମୁଁ ମିନତି || ୩||

ଲଲାଟେନ୍ଦୁ କବି ୨୦୧୭୦୯୦୮-୦୧୩୨

# ପ୍ରୀତିଚିହ୍ନ 44

======

ତୋ ଲାଗି ଲେଖିଛି ବସି
ମୁଣ୍ଡ ଝାଳ ତୁଣ୍ଡେ ଶୋଷି,
ଏବେ ବିମୁଁ ଲେଖିବି କବିତା।
ହେଲେ ସେ ରାତି ଦୀପାଳି
କି ହେବ ତୋ ଲାଗି ଜାଳି
ନ ରହିଲୁ ବାଳୀ ମୋ ଦୁହିତା ॥୧॥

ତିଳେ ନ ରଖିଲୁ ଜ୍ଞାନ
ନିଜ ମାନ ସନମାନ
ଆତ୍ମୀୟ ସ୍ୱଜନ ହିତ କଥା
ଶୁଭ ତୋର ଯେ କହିଲା
କୋପ ତୋ ତାକୁ ଦହିଲା
କାନ୍ଦି କାନ୍ଦି ମଲା ଆତ୍ମୀୟତା ॥୨॥

ମୁଁ ବି କେତେ ମୂଢମତି
ତୋତେ ଦେଇଥିଲି ଅତି
ଆପଣା ସନ୍ତତି ପରିଚୟ;
ଦେଖି ତୋ ଏ ମତିଗତି
କେ କଲେ ଶରଧା ଅତି
ତୋ କାହାଣୀ-ସ୍ମୃତି ଆଣେ ଭୟ`॥୩॥

ନ ରହୁ ବନ୍ଧନ ଆଉ
କରମେ ଯା ଅଛି ଥାଉ
ସୁଖେ କଟି ଯାଉତୋର ଦିନ।
କେବେ ଏ ହଜିଲା କଥା
ଭାରି କଲେ ଆଖି ପତା
ପଢଏ କବିତା: ପ୍ରୀତିଚିହ୍ନ॥୪॥

ଲଲାଟେନ୍ଦୁକବି

୨୦୧୭୦୯୦୭-୧୮୪୨

# ବର୍ଷାରାତି 45

=====

ଏଇ ସେ ବର୍ଷା ବାରି –
ଦେଖି ମନେ ପଡେ
ଏଇ ବର୍ଷାରେ
ଫେରି ମୁଁ ଆସିଲି ତୁମେ ଗଲ ଦୂରେ,
ସେ ବନ ଉହାଡେ
ଅଧୁରା ମିଳନ ଛାଡି;

ଘନ କର୍ବୁରେ ସ୍ୱାନ୍ତ କୁହରେ
ତପ୍ତ ଲୁହରେ ଦୃପ୍ତ ଶିହରେ
ସ୍ପନ୍ଦନ ଯେବେ କମ୍ପ୍ର ସମୀରେ
ଚାଲିଥିଲା ବଢି ବଢି ||-୧

......

ଆଜି ଏ ବର୍ଷା ରାତି --
ମାଡି ଆସେ ଭୀତି;
ଦେଖି ବନ ବୀଥୀ ଦୁର୍ଗତ ଅତି,
ଫୁଲ୍ଲ ସରିତ ଦୁର୍ଦମ ଗତି;
ମନେ ପଡେ ସେଇ ହଜିଲା ସ୍ୱପ୍ନ
ପ୍ରୀତି-ସିଞ୍ଚିତ ଶୈଳ କାନନ;

ତଳେ ଝଡି ପଡି ଆଶା ଯାଏ ସଢି,
ବର୍ଷା ସାଥୀରେ ନେତ୍ରୁ ମୋ ଝରେ
ତପ୍ତ ଲୋତକ ବାରି,
ଏବେ ଦେଖି ଏ ବର୍ଷା ଝଡି ||-୨

.....

ଲଲାଟେନ୍ଦୁକବି
୨୦୧୭୦୮୨୮୨୨୩୨

# ପ୍ରାଚୀନ ଗଳ୍ପଟିଏ 46

"

ଶୂରୋଽସି କୃତବିଦ୍ୟୋଽସି ଦର୍ଶନୀୟୋଽସି ପୁତ୍ରକ |

ଯସ୍ମିନ୍କୁଳେ ତ୍ୱମୁତ୍ପନ୍ନୋ ଗଜସ୍ତତ୍ର ନ ହନ୍ୟତେ ||
"
ଫେରବଜମ୍ବୁକଫେରଣ୍ଡଫେରକ୍ରୋଷ୍ଟୁକ = ଶୃଗାଳ
ମରୁଦ୍ପ୍ଲବଶାର୍ଦ୍ଦୂଳଶୈଳାଟକେସରୀ = ସିଂହ
କୁଞ୍ଜର = ଗଜ

# ଯସ୍ମିନ୍କୁଳେ ତ୍ୱମୁତ୍ପନ୍ନୋ ଗଜସ୍ତତ୍ରନହନ୍ୟତେ

==========================

ମାତୃହରା ଦେଖି ଥରେ ଶୃଗାଳ ସନ୍ତାନ;
ପାଳି ସିଂହୀ କୃପାଭରେ କଲା ସ୍ତନ୍ୟ ଦାନ ||୧

କାଳେ ପ୍ରସବିଲା ସିଂହୀ ଦୁଇଟି ତନୟ,
ଫେରବେ ଅଗ୍ରଜ କହି କଲା ପରିଚୟ ||୨

ତିନିଙ୍କର ଚାଲିଥିଲା ବନେ ବିଚରଣ,
ଆତ୍ମୀୟତା ଭରା ଥିଲା ତାଙ୍କ ଆଚରଣ ||୩

ଜନନୀ ଶିକ୍ଷାରେ ବେନି ଶାର୍ଦ୍ଦୂଳ କୁମାର
ଜମ୍ବୁକେ ଭ୍ରାତୃକ ମଣି କରନ୍ତି ସତ୍କାର ||୪

ଦିନେ ଦେଖି ମହାଦନ୍ତୀ ଶୈଳାଟ ତନୟ,
ଫେରଣ୍ଡ-ପୁତ୍ରେ କହନ୍ତି ରଣ ଅନୁନୟ ||୫

ଫେର ଶିଶୁ କହେ ଶୁଣ, କର ନାହିଁ କଳି,
ବିଶାଳ କୁଞ୍ଜର ଜାଣ, ପାଦେ ଦେବ ଦଳି ||୬

ଅଜ୍ଞାନୀ ଅନୁଜ ମୋର ମାନ ମୋ ବଚନ;
ବଳୀଠୁ ବୃଥା ନ କର କ୍ଳେଶ ଆମନ୍ତ୍ରଣ ||୭

ଶୋକେ ମରୁଦ୍ପ୍ଲବ ବତ୍ସ ବିଳପନ୍ତି ଯାଇ,
ଦୁର୍ଭାଗ୍ୟେ କି କାପୁରୁଷ ଆମ୍ଭ ଜ୍ୟେଷ୍ଠଭାଇ ||୮

ଅନୁଜଙ୍କ ପରିହାସେ କ୍ରୋଷ୍ଟୁକ ସନ୍ତତି
କୋପ ବଶେ ମାତା ପାଶେ ବାଢେ ତା ଆପତ୍ତି ||୯

ରୂପ ଗୁଣ ବିଦ୍ୟା ଉର୍ଜା କାହିଁରେ ମୁଁ ଊନ ?
କରନ୍ତି ସେ ଥଟ୍ଟା ମଜା, ଯେହ୍ନେ ମୁଁ ନିଉନ ||୧୦

କୃତକ ବଚନ ଶୁଣି ଅତି ସନ୍ତର୍ପଣେ
ଦୟାବତୀ କେସରିଣୀ କହନ୍ତି ତା କର୍ଣ୍ଣେ ||୧୧

ରୂପଗୁଣେ ବିଦ୍ୟାବଳେ ତୁହି ଚମତ୍କାର
ହେଲେ, ଜନ୍ମ ତୋ ଯେ କୁଳେ ମତଙ୍ଗ ସଂହାର || ୧୨

କରି ନାହିଁ କେବେ କେହି, ଭାଳି ନାହିଁ ମନେ;
ସେ ଲାଗି ବ୍ୟଥିତ ତୁହି କିମ୍ପାଁ ଅକାରଣେ ||୧୩

ଜାଣିଲେ ଦିନେ ମୋ ସୁତେ ତୋର ପରିଚୟ,
କରିବେ ଆହାର ତୋତେ, ଲାଗିଲାଣି ଭୟ ||୧୪

ଦିଶିଲାଣି  ସେହି ଦୃଶ୍ୟ ହୃଦ-ବିଦାରକ
ଦୂରେ ଏଣୁ ଚାଲି ଯାଅଏବେ ମୋ ପୁତ୍ରକ ||୧୫

ଯେ ଗଢା ଏ ସଂସରଣେ ଯେ କାର୍ଯ୍ୟ ସକାଶ,
ତହୁଁ ଭିନ୍ନ ଆଚରଣେ ମିଳେ ଉପହାସ ||୧୬

ସର୍ବେ ହେବେ ନାହିଁ କବି ଲେଖକ ଗାଳ୍ପିକ;
ପଠାଇଛି ଅନୁଭବୀ ମହା-ବୈତାଳିକ, ||୧୭

ଦେଇ ଭିନ୍ନ ଭିନ୍ନ ଜନେ ଭିନ୍ନ କୁଶଳତା,
ବିପରୀତ ଆଚରଣେ ହେବ ବିଫଳତା ||୧୮

ଜଗତେ  କେବଳ ଲୋକେ ହସୁଥିବେ ଦେଖି,
ତଥାପି ବିକଳ ଥୋକେ ଚାଲିଥିବେ ଲେଖି ||
କହି କି ପାଇବି ଲାଭ ?
ବଢିବ କେବଳ ମୂଢ- ଜନ ପ୍ରାଦୁର୍ଭାବ ||୧୯

ଲଲାଟେନ୍ଦୁକବି  ୨୦୧୭୦୮୨୩- ୦୪୫୫

## ଏକାଠି କରିବା ବାସ 47

ଯାଇଥିଲ କହି -- ଆସିଥିବୁସହି ଛାଇଲେଉଟାଣିବେଳେ
ହାତଧରିତୋର ନେଇଯିବିଘର ଚନ୍ଦରଉଦିଆହେଲେ || -୧

ଛାଇ ଗଲା ଗଡି ସଞ୍ଜ ଗଲା ମାଡି ଜହ୍ନ ଉଇଁ ବୁଡି ଗଲା,
ରେଖାଯାନ ଗାଡି କେତେ ଗଲା ଗଡି, ତୁମେ କାହିଁ ଗଲ ଭଲା ! -୨

କହି ଯାଇଥିଲ ରାତ୍ରି-ଗନ୍ଧା ଫୁଲ ଗଭାରେ ମୋ ଦେବ ବାନ୍ଧି;
ସାଜି ବିରହିଣୀ ଆଜି ଏକାକିନୀ ଝୁରି ମୁଁ ମରୁଛି କାନ୍ଦି || -୩

ଅଗଣା ଭିତରେ ତୁମରି ହାତରେ ଲଗାଇ ଯେ ଥିଲମଲ୍ଲୀ,
ଫୁଲ ଫୁଟି ଝରେ ତୋଳି ମୁଁ ନ ପାରେ ତୁମେ ନାହଁ ପାଖେ ବୋଲି || -୪

କୁଙ୍କୁମ ଅଳତା ଅଛି ମୋ ସାଇତା, ଦେଇଥିଲ ହାତେ ମୋର,
ଲଗେଇବା ପାଇଁ ଦେଲେ ତାକୁ ଚାହିଁ ଲୁହ ଝରେ ଝର ଝର || -୫

ଫୁଲି ଯାଏ ଆଖି, ଗଳା ଯାଏ ଶୁଖି, ଭିଜି ଯାଏ ଗଣ୍ଡସ୍ଥଳ
ତୁମ କଥା ଭାଳି ରାତ୍ରି-ଦୀପ ଜାଳି ନୟନୁ ଢାଳିଲେ ଜଳ || -୬

ତୁମ ସଙ୍ଗେ ଦେଖା ନାହିଁ ଯେଣୁ ଲେଖା ବିଧୁରିତା ମୁଁ ବନିତା;
ହାରିବି ଜୀବନ କରି କରି ଗାନ ଦରଦୀ ତୁମ କବିତା || -୭

ଆଖିରେ ଆଖିଏ ଲୁହ ମୋର ଥାଏ, ଛାତିରେ ଛାତିଏ କୋହ;
ତାନପୁରା ତାନେ ଆରୋହ ମୁଁ ଟାଣେ, ଭୁଲି ଯାଏ ଅବରୋହ || -୮

ରଖି ଥିବ ବଳ ଆଉ ତ କେବଳ ଅଳପ ଦିନ କି ମାସ,
ଝୁରି ଝୁରି ଦିନ ଯିବି ଶମଶାନ, ଏକାଠି କରିବା ବାସ || -୯

ଲଳାଟେନ୍ଦୁକବି୨୦୧୭୦୮୨୪-୨୩୧୬

## ଜ୍ଞାନରୁ ଟିକିଏ ଦିଅ 48

ଆହେ ବକ୍ରତୁଣ୍ଡ ତୁମ୍ଭ ପଦେ ରୁଣ୍ଡ ବ୍ରହ୍ମାଣ୍ଡ ପଣ୍ଡିତ ଜନେ,
ଜ୍ଞାନର ଭଣ୍ଡାର ତୁମ୍ଭେ ବିଘ୍ନେଶ୍ୱର କୃପା କର ଅକିଞ୍ଚନେ ||

କି ରାଜା ପରଜା ତୁମ୍ଭ ଅଗ୍ରପୂଜା ବିନୁ ନାହିଁ ଆନଗତି,
କରୁଛି ମିନତି ବେନି ହସ୍ତ ପାତି ଦିଅ ବୁଦ୍ଧି, ଜ୍ଞାନ, ଭକ୍ତି ||

ବିଦ୍ୟାର ସାଗର ପରମ ଈଶ୍ୱର ମାଗେ ମଥା ନତ କରି
ପାତକନାଶନ ଗିରିଜାନନ୍ଦନ ଦିଅ ମୋ'ଠି ବିଦ୍ୟା ଭରି ||

ଆହେ ଲମ୍ବୋଦର ଭବେଶ କୁମର ସ୍ୱାଦିଷ୍ଟ ଆହାର ପ୍ରିୟ
ତୁମ କୋଷ ସାଇଁ ସରି ଯିବ ନାହିଁ ଜ୍ଞାନରୁ ଟିକିଏ ଦିଅ ||

ବିଦ୍ୟା ଦେଇ ସାରି ଯିବ ଏଠୁ -ଫେରି କରି ଦେବି ବିସର୍ଜନ;
ଆବର ବରଷେ ବିହର ହରଷେ ନ କରିବି ଆବାହନ ||
ଲଲାଟେନ୍ଦୁ କବି (୫୦୪) ୨୦୧୭୦୮୨୪-୧୨୩୦

## ନିଶୀଥ ନିକେତ ଦୁର୍ଗତର ଗୀତ 49

ପୟରକୁ ନର ଶିରକୁ କୁକ୍କୁର- ଉଦର ଶ୍ରୟ ମୋ ହରି;
ଉସ୍ରାନ୍ତେ ଅନ୍ୱେଷ ନିଶୀଥ ନିବାସ ସର୍ବାଧାର-ସର୍ବକାରୀ -୧

ଶାସକଶାସିତ ସମ୍ବନ୍ଧଶଙ୍କିତ ନୁହେଁମୋଶୟନସ୍ଥଳୀ;
ଦୁଷ୍କର -- ମତ୍ସର ଶୃଙ୍ଗୀ, ହିଂସ୍ର, ଶୂର, ମୋସୁଖେସାଧିବକଳି -୨

ଜୀବନ୍ତ ଯୌବନ ଯାମିନୀ ଯାପନ- ଝର୍ଝରକେ ଜଳି ଯାଏ;
ଅଜନ-ଆଜାନ- ଜୀବନଟା ଜାଣ ପ୍ରେତାୟନ-ପଥ ପ୍ରାୟେ -୩

ଲଲାଟେନ୍ଦୁକବି୨୦୧୭୦୮୨୩-୧୯୧୯

ଶ୍ରୟ= ଆଶ୍ରୟ; ଉସ୍ର= ଦିନ, ଉସ୍ରାନ୍ତ= ଦିନଶେଷ; ଅନ୍ୱେଷ= ଖୋଜା; ସର୍ବକାରୀ= ସରକାରୀ; ଦୁଷ୍କର= ବିରଳ; ମତ୍ସର= ଈର୍ଷ୍ୟାପର; ଶୃଙ୍ଗୀ= ଶିଙ୍ଗଧାରୀ [ତୃଣଭୋଜୀ]ପଶୁ, ଶୂର= ବୀର [ମଣିଷ]; ଝର୍ଝରକ= କଳିଯୁଗ; ଅଜନ= ହେୟଜନ; ଆଜାନ= ଜନ୍ମ; ପ୍ରେତାୟନ= ପ୍ରେତରଗତି

ତୁହି କାବ୍ୟ କନ୍ୟା ମାଆ ମୋର ଲିନା
` ଦେଖାଦେଲୁ ଏତେ ଦିନେ;
ତୋ ମଧୁ ବଚନ ହେଲା ଗୁଞ୍ଜରଣ,
ଆନନ୍ଦ ଖେଳିଲା ମନେ |

ତୋ ନୂଆ ସଂସାରେ ସୁଖ ଉଠୁ ପୂରି
ବିକଶୁ ନବୀନ କଳି;
ହୁଅନ୍ତୁ ତୋ ସ୍ୱାମୀ ତୋର ଅନ୍ତର୍ଯ୍ୟାମୀ;
ସେ କଳିର ସ୍ନେହୀ ମାଳୀ ||

# ଶ୍ରାବଣୀ ବେଳାରେ ପ୍ରେୟସୀବାଳାକୁ ଅଭିସାର ସମ୍ଭାଷ 50

==========

ଶତପତ୍ରର ଲାସ୍ୟ, ଖସିଲେ ବର୍ଷା ବୃକ୍ଷ-ଶାଖେ;
ଶିଖିନୀର ନାହିଁ ଚନ୍ଦ୍ରିକା ବୋଲି କଞ୍ଜାର ନାଟ ଦେଖେ |
ପ୍ରାନ୍ତରେ ଭିଜା ଦୁର୍ବା ତିରଣେ ଦର୍ଦ୍ଦୁର କରେ ଭେରୀ;
ଦୀନା ଦର୍ଦ୍ଦୁରା ଦାର୍ଦ୍ଦୁର କୂଳେ ଶୁଣୁଥାଏ କାନ ଡେରି |
ଶୁଣେ -- ଚକ୍ରପକ୍ଷାପୁଣ
ଜଳେ ଉଦ୍ଭଳ କାଳକଣ୍ଠର ବଜ୍ର-ସମ୍ଭାଷଣ || -୧

ଶ୍ରାବଣ ଆସିଲା ତା ସାଥେ ହସିଲା ଶ୍ରାବଣୀ ମୃଦୁଳା ବାଳା;
ଶୀତଳ ବର୍ଷା- ବତାସ ସଙ୍ଗେ ପ୍ରୀତି-ସଙ୍ଗୀତ ବେଳା |
ଭାମିନୀ ପ୍ରେମିନୀ ! ସୌଦାମିନୀର ଚଞ୍ଚଳ ପଦ-ପାତେ;
ବଲ୍ଲଭ ପ୍ରାଣ ଯୌବନ ଭରି ଯାଏ ଉନ୍ମନା ଗୀତେ !
ଆସ -- ଆସ ଅଭୀଷ୍ଟା ଆସ;
ନିରାଶ ବିରହୀ ଖର ନିଃଶ୍ୱାସେ ଭରି ଦିଅ ଉଚ୍ଛ୍ୱାସ ||-୨

ନିର୍ଝରୀ ଝରି ଔପଳ କୂଳେ କାଳ-ସୂର୍ଯ୍ୟର ଜଳେ
ହାରିବ ବୋଲି ତା' କୁଳ-ଅଦ୍ୱୟ ଆକୁଳେ ଅଗ୍ରେ ଚଳେ |
ପକ୍ଷ ପ୍ରସାରି ପୁଷ୍ପ-ଶିକାରୀ ଶ୍ୱେତପୁଷ୍ପର ଛଳେ,
ପ୍ରୀତି-ଉଦ୍‌ଯୁତା ମଞ୍ଜରୀ-ବାଳା ତନୁ-ତର୍ପଣ ଢାଳେ |
ଆଜ -- ଅବଗୁଣ୍ଠନ ଖୋଲି,
ଯୁଗଯୁଗାନ୍ତ କୀର୍ଣ୍ଣା କାମିନୀ କନ୍ଧରେ ଯାଅ ଝୁଲି ||-୩

ଲଲାଟେନ୍ଦୁକବି ୨୦୧୭୦୬୦୧-୦୪୩୦

# କାଲି କାହିଁ, କେବେ କାଲି ? 51

କାଲି କିଏ ଥିବ ? ମରି ହଜି ଯିବ:
ନ ଆସୁ ଆଗାମୀ କାଲି;
ତାକୁ ରଖ ଧରି ଘୋଷାରି ଓଟାରି,
ସମୟ ନ ଯାଉ ଚାଲି ||-୧

ଆଜି ଲାଗୁ ନାହିଁ ଆଜି ପରି ଭାଇ:
ଇଏ ତ କାଲିର କାଲି;
ଏ ବି କାଲି ପରି ଯାଏ ମରି ମରି
ଘଡ଼ିରୁ ସରୁଛି ବାଲି ||-୨

କାଲିଟା ଦିଶେନା ପାଖକୁ ଆସେନା
ଦୂରେ ଦୂରେ ଥାଏ କାଲି
ଆଜି ମାଡ଼ି ଯାଏ ରହେନା ଘଡ଼ିଏ
କାଲି ହେବା ପାଇଁ ଖାଲି ||-୩

ଆଜିର ଯେ କାଲି ଆଜି ହେଇ କାଲି
ଆଖିରେ ଛାଟିବ ଧୂଳି;
ଠକି ଠାକି ଦେଇ ବାଡ ବନ୍ଧ ଡେଇଁ
ଯିବ ସେ ସଭିଙ୍କୁ ଭୁଲି ||-୪

କେତେ ଗଲେ କାଲି ଆଖି ଦେଖେ ଖାଲି
ଧାର ଧାର ଲୁହ ଢାଳି;
କଳି ଖେଳି କଳି ପଡୁଛି ଝାଉଁଳି
ଚାହିଁ ରହିଥାଏ ମାଳୀ ||-୫

ଲଲାଟେନ୍ଦୁ କବି
୨୦୧୭୦୮୧୮-୨୧୧୫

# ତୋ ଜୀବନ ଗୋଟେ ନଈ 52

ତୋର ଅଭିଳାଷ ଥାଉ ଚାପି ହେଇ,
ଆଶା ବୈତରଣୀ ଯାଉ ବହି ବହି,
ପଥ ଜୀବନର ଅଛି ବହୁ ଦୂର;
ହୁଅ ଅଗ୍ରସର ଗୀତ ଗାଇ ଗାଇ;

ପଛ କଥା ସବୁ ଭାଳି କି ପାଇବୁ,
ସବୁ ପଡୁ ଥାଉ ମନେ ରହି ରହି ||
{1}

କିଛି ଅଛି କପାଳରେ, କିଛି ନାହିଁ
କିଛି ମିଳିବ, ନ ଖୋଜି ପାଇ ଯିବୁ
ଆଉ ଏମିତି ବି କିଛି ଅଛି ବାବୁ,
ତାକୁ ଖୋଜିଲେ, କାନ୍ଦିଲେ ମିଳେ ନାହିଁ
ସିଏ ଖସି ଚାଲି ଯାଏ ହାତେ ଥାଇ,
ଜମା, ଦେଖିତାକୁ ରୋକି ହୁଏ ନାହିଁ
ମିଛେ ତା ଲାଗି ଲୋତକ ଢାଳ ନାହିଁ||
{2}

ତୋ ଜୀବନ ଯେଣୁ ଗୋଟେ ନଈ
ପଥେ ତାର ଯାଉ ସିଏ ବହି;

ଜନ୍ମଦାତ୍ରୀ ଶିଳାଗର୍ଭୁ
ପଥ ପଥେ ଯେତେସବୁ
ଆବର୍ଜନା ଧରି ସାଥେ
ଜୀବନର ଯାତ୍ରା ଅନ୍ତେ
ସାଗରେ ଦେବୁ ବିସର୍ଜି
ଅନ୍ତର ବେଦନା ରାଜି,
ହୃଦୟ କଠୋର କରି ଚାଲି ଥାଅ ବୋହି
ଜୀବନର ଅଭିଳାଷ ଥାଉ ଚାପି ହେଇ||
{3}

ଲଲାଟେନ୍ଦୁକବି୨୦୧୭୦୮୧୭-୧୭୦୮

## ପ୍ରାର୍ଥନା (୩) 53

ତମୋ- ଗୁଣ୍ଠନପ୍ରଶ୍ରିତ ମୂଢ଼ ଜନେ,
କ୍ଷାଳ ନିତ୍ୟ ନିରବ୍ୟୟ ଜ୍ଞାନାଞ୍ଜନେ ||-୧

ମାୟା- ବନ୍ଧନଦୁଃସ୍ଖଳ ହୀନବିରେ
ଦେଇ ଶକ୍ତିଅପ୍ରମିତ ତାର ତାରେ ||-୨

ଭୂତ କାମ-କ୍ରୋଧ-ଲୋଭ- ମୋହବଶେ;
କର ପୂର୍ଣ୍ଣ ପ୍ରେମସୁଧା- ସ୍ନିଗ୍ଧରସେ ||-୩

ମଦ- ମତ୍ସରଲୁଣ୍ଠିତ ପାପୀନରେ;
ରଖ ବେଷ୍ଟିତ ସତ୍ୟର ସାର୍ବ ସ୍ୱରେ ||-୪

ମନ, ଇନ୍ଦ୍ରିୟ, ତନ୍ମାତ୍ର ଶାନ୍ତ କରି;
ଦିଅ ଦାନ୍ତିଦୟାପ୍ରୀତି- କ୍ଷାନ୍ତି ଭରି ||-୫

ପ୍ରତି ଲମ୍ଭନ, କମ୍ପନ, ସ୍ପନ୍ଦନରେ
ରଖ କୀର୍ତ୍ତି-ମାନ-ଯଶ- ତୃଷ୍ଣା ଦୂରେ ||-୬

ଅତି- ଯାଚ୍ଞା-ବଶେ ବସେ ସ୍ଫାର ଖେଦେ;
ସୂୟ ହର୍ମ୍ୟ-ଭୂମେ ରଖ ସ୍ୱ-ପ୍ରସାଦେ ||-୭

ଏ ମୋ ଭିକ୍ଷୁ-ଆଚରଣେ ଆର୍ତ୍ତି ଭରି
ନିଅ ସଂବସଥେ ତବ ପୁତ୍ର କରି ||-୮

ଲଲାଟେନ୍ଦୁକବି୨୦୧୭୦୬୨୩ଶ୍ରୀହରିଶରଣମ୍

ପ୍ରଶ୍ରିତ= ଆବୃତ; ଦୁଷ୍ଖଳ= କୁମାର୍ଗସ୍ଖଳିତ; ବିର= ମଣିଷ; ଭୂତ= ଅଭିଭୂତ, ରୁଗ୍ଣ; ସାର୍ବ= ସର୍ବବ୍ୟାପ୍ତ; ଦାନ୍ତି= ଧୈର୍ଯ୍ୟ; ଲମ୍ଭନ= ପ୍ରାପ୍ତି; ବସେ= ବାସକରେ, ରହିଥାଏ; ସ୍ଫାର= ବିସ୍ତାରିତ, ବିସ୍ତୃତ; ସଂବସଥ= ଗୃହ, ବାସସ୍ଥାନ

## ଶାଶ୍ୱତପ୍ରେମ-ଗୀତ 54

ଜାଣିବୁ ମୋ ସାଥୀ ଦିନେ କିମ୍ପାଁ ଭାଲୁ କିଏ ଇଏ;
ତୋ ଘରେ ଜାଳିବି ଯେବେ ଶାଶ୍ୱତ ଦୀପାଳିଟିଏ ||-୧

ଏଇ ମନ ଗଙ୍ଗା କା'ର, ଏମନ କା' ବୃନ୍ଦାବନ;
ମୋର ମନ ଘୋର ବନ ନ ଥିଲେ ତୁ ଗଣ୍ଡିଧନ ||-୨

ଦୀପଂଜ୍ୟୋତିପରଂବ୍ରହ୍ମ ଦୀପଂଜ୍ୟୋତିପରନ୍ତପ;
ତୋ ବିନା କି ହେବ ତପ, କି ଲାଗି ଜାଳିବି ଦୀପ ||-୩

ଯେ କରୁ ଓପାସ ବ୍ରତ, ଜାଳୁ ତା ଜାଗର ବତୀ;
ପାଶେ ତୁ ନ ଥିଲେ ସାଥୀ, କା ଲାଗି ସାଜିବି ଯତୀ ||-୪

କି ହେବ ସାଧି ସାଧନା, କି ହେବ ପୂଜା-ଅର୍ଚନା;
ଜୀବନ ରହିବ ଊଣା ନ ଥିଲେ ତୋ ସମ୍ଭାବନା ||-୫

ଲଲାଟେନ୍ଦୁକବି୨୦୧୭୦୬୧୫-୧୪୦୩

## ଶାଶ୍ୱତପ୍ରେମ-ଗୀତ [ଭାଗ-୦୨] 55

ଶୁଣ ନାରୀ-ହୀରା ବାରେ ଶୁଣ ମୋ ପରାଣ ମିତ;
ଅଛି ମୋ ଖାତା-ପତରେ ଅନେକ ଅଲୋଡ଼ା ଗୀତ | -୦୬

ତୋ ଲାଗି ଲେଖିଛି; କେହି କହିବେନି ଭଲ ଥରେ;
ଥରେ ତୁହି ଦିଅ କହି ଏବେ କି ମୋ ଗଲା ପରେ | -୭

ଅଦେଖା ଅପାଙ୍ଗ ଛଳ ଅଲେଖା ଅଧର ବାଣୀ
ଅପୋଛା ନୟନ ଜଳ ରଖିଛି ସେଥିରେ ଛାଣି | -୮

କହିନି କାହାକୁ କିଛି, ରାଗନା ରାଗନା ସାଥୀ;
ତୋ ନାମ ଗୋପନ ଅଛି, ଲେଖିଛି ଅନ୍ଧାରେ ଅତି | -୯

ଗୋପନେ ଲେଖିଛି ଯାହା ତୋ ହାତେ ଦେବି ମୁଁ ତୋଳି;
ସପନେ ପଢ଼ିଲେ ତାହା ମୋ କଥା ବୁଝିବୁ ବାଳୀ | -୧୦

ଲଲାଟେନ୍ଦୁକବି୨୦୧୭୦୬୧୫-୧୫୩୯

## ଶାଶ୍ୱତପ୍ରେମ-ଗୀତ [ଭାଗ-୦3] 56

ମାରିବୁନି ମନ କେବେ ମୋ କଥା ପଡ଼ିଲେ ମନେ
ଗାଇବୁ ମୋ ଗୀତ ପଦେ ମଧୁବୋଳା ତୋର ତାନେ | -୧୧

ଯେବେ କିଏ ପଚାରିବ ଏ ଗୀତ କାହାର ବୋଲି;
କହିବୁ କିସ ପାଇବ, ଗାଉଛି ତ ମନ ଖୋଲି | -୧୨

ପାରିଲେ ଗାଇବୁ ଏକା, ଏକା ତୁ ଶୁଣିବୁ କାନେ,
ନ କହିବୁ କାହା ଲେଖା, ମୋ ନାମ ନ ନେବୁ ଦିନେ |-୧୩

ଗାଇବୁ କାଳିମା କୋଳେ, ନିଶଥ ନିଶୀଥ ବେଳା;
ସକାଳ, ବିକାଳ କାଳେ ଖାତା ନ ଖୋଲିବୁ ବାଳା ||-୧୪

କଳିକତା କୋଳାହଳେ ଗାଅ ନା ଗାଅ ନା ସାଥୀ;
ନ ପଡ଼ୁ ଆନ ମୃଦୁଳେ ଉତ୍ଫୁଲା-କ୍ଷାଳିତ ପ୍ରୀତି |-୧୫

ଲଲାଟେନ୍ଦୁକବି
୨୦୧୭୦୬୧୫-୧୫୩୯

## ଏକବିଂଶ ଶତାବ୍ଦୀର ରଜ ଦୋଳି ଗୀତ 57

ବନସ୍ତରେ ନାହିଁ ଗଜ:
ବନ ସାରି ଦେଲା ମଣିଷ ଆଜ;
ଆଜ – କାଠ ମିଳୁ ନାହିଁ – ଗଢିବାକୁ ଗୋଟେ ମେଜ | ୧

ପଟାଦୋଳି ମିଳେ ନାହିଁ;
ଗାଆଁ ସହରରେ ଗଛ ବି କାହିଁ
ଗୋଟେ – ଡାଳ କାହିଁ କହ – ଦୋଳିଟେ ଟାଙ୍ଗିବା ପାଇଁ | ୨

ଯିବା ନାହିଁ ଚୁଲ୍ଲୀ ଶାଳ;
ପିଠା ପଣା ବି ତଣିଖିନୁ ଭଲ;
ତିନି – ଦିନ କାଳଏବେ -- ଓପାସରେ କଲ ବଲ |୩

ଆସିଲେ ବରଷା ବଢ଼ି
ଗଛ ନାହିଁ ମାଟି ଯିବ ଭୁଷୁଡ଼ି;
ଜଳ – ନ ମାନିବ ବାଧା -- ସଂସାର ଦେବ ଓପାଡ଼ି |୪

ଜହ୍ନି ଫୁଲ ଫୁଟି ଠୋ ଠା;
ଜଙ୍ଗଲ ହେଲାଣି ଇଟାର କୋଠା;
ଏତେ – ଗରମରେ ଝାଳ – ସର ସର ଦେହ ଗୋଟା |୫

ମିଳୁନି ପନି ପରିବା;
ଦୋଳି ଖେଳ ସାରି ଘରକୁ ଯିବା;
ଛେଳି – କୁକୁଡ଼ା ମାଉଁସ – ଖାଇ ମନ୍ଦିରେ ପଶିବା |୬
ଲଲାଟେନ୍ଦୁକବି୨୦୧୭୦୬୧୦-୦୧୪୧

## ପାଳିଥିଲି ବାଘୁଣୀ ମୁଁ -- ଶିକାରୀ; (ଭାଗ-୧) 58

ହେଲା -- ଅପରୂପାସିଏସୁନାଗୋରୀ ||
ଭାଗ୍ୟେ -- ଲେଖାଥିଲା, ହେଲିବନଚାରୀ

ଗହନ ସଘନ ବନେ ତୁହିନ ହରିଚନ୍ଦନେ
ଧରିଥିଲି ବନଶ୍ୱାନୀ -- ବିଚାରୀ;
ତାକୁ – ପଞ୍ଜରକେ ରଖିଲି ଆଦରି || -୧

ପୂଜିଲି ପଞ୍ଜର ଦିନେ ସିନ୍ଦୂର ଘୃତ ଚନ୍ଦନେ;
ଦେଲି ପିନ୍ଧାଇ ସିନ୍ଦୂର -- କସ୍ତୁରୀ;
ରାତ୍ର -- ପାଲଟି ସେ ଗଲା ସୁନା ଗୋରୀ || -୨

ତା ରୂପରେ ହେଲି ଭୋଳ, ପୀରତି ହେଲା ଉଚ୍ଛଳ
ସେ ଦିଶିଲା ଅପରୂପା -- ସୁନ୍ଦରୀ
ଦୁହେଁ -- ବସିଥିଲୁ ହାତେ ହାତ ଧରି || -୩

ଭାଷେ ସେ ଝଷ-ବାସିନୀ, ସ୍ୱଭାବେ ଯୋଷା କାମିନୀ
ମୋତେ ବରି ହେବ କି ମୋ -- ଶୃଙ୍ଗାରୀ;
କଥା -- ଦେଲି ତାକୁ ମଥାକୁ ଚୁଙ୍ଗାରି || -୪

ଶୁଣି ମୋ ବନ୍ଧୁ କୁଟୁମ୍ବ କହନ୍ତି, ହୀନସ୍ୱଭାବ
ଯାଉ ଆମ ବସତିରୁ -- ବାହାରି;
ପୋଡ଼ା- ମୁହିଁ ସଙ୍ଗେ କୁଳ ଦେଲା ସାରି || -୫

ବାହା ତାକୁ ହେଲି ଯେବେ ମାଗିଲେ ଭନ୍ଧୁ-ବାନ୍ଧବେ
ପୁରସ୍କାରୀ ତିରସ୍କାରୀ -- ଜୁହାରୀ
ନେଇ -- କହିଲେ ଏ କୁଳର ଭଗାରୀ || -୬

ଲଲାଟେନ୍ଦୁକବି ଶ୍ରୀହରିଶରଣମ୍ ୨୦୧୭୦୪୦୨-୧୭୫୨

# ପାଳିଥିଲି ବାଘୁଣୀ ମୁଁ ଶିକାରୀ (ଭାଗ-୨ : ଶେଷ) 59

ହେଲା -- ଅପରୂପା ସିଏ ସୁନା ଗୋରୀ ||
ଭାଗ୍ୟେ -- ଲେଖା ଥିଲା, ହେଲି ବନଚାରୀ

ନିନ୍ଦା ମୋ ସହି ନ ପାରି ରାତିକେ ମୋ ହାତ ଧରି
ନେଲା ସିଏ ବନସ୍ତକୁ -- ଓଟାରି,
ଗୁମ୍ଫା -- ଖୋଳି କଲା ଘରଟେ ତିଆରି || -୭

ସେ ରାତି ମୋ ପାଶେ ବସି ଦେହ ମୋର ଦେଲା ଘସି
ଧଇଲା ମୋ ଛାତିକୁ ସେ -- ଆବୋରି,
ସତେ -- ଦେଲା କି ମୋ ପଞ୍ଜରା ବିଦାରି || -୮

ପ୍ରଭାତେ ଦେଖି ମୋ ହିଆ ସକେଇ କାନ୍ଦିଲା ପ୍ରିୟା
ବସିଲା ମୋ ପାଦ ପାଶେ-- ଜୁହାରି,
ଦେଖି -- ମଳି ଚମ ଯାଇଥିଲା ଚିରି || -୯

ସଞ୍ଜ ଆସିବାରେ ମାଡି ଗଲା ସେ କୁହାଟ ଛାଡି
ଫଳ ମୂଳ ଆସି ଦେଲା -- ଅଜାଡି
ଖାଇ -- ଶୋଇଥିଲା ଗଣ୍ଡିକୁ କଚାଡି || -୧୦

ମୋ ଆଖିରେ ନିଦ ଦେଖି ଉଠିଲା ପରାଣ ସଖୀ
ସେ ରାତି ସାଜିଲା ମୋର-- ପ୍ରହରୀ,
ବନ -- ଚଉହଦୀ ଜଗିଲା ହୁଙ୍କାରି || -୧୧

ସେ ଦିନୁ ଗହନ ବନେ ଭ୍ରମି ସେ ଗିରି କାନନେ
ମୁଁ ତ ବନବାସୀ, ନୁହଁ -- ସହରୀ;
ଦୁହେଁ -- ଚଳୁଅଛୁ କପାଳ ଆଦରି ||- ୧୨

ଲଳାଟେନ୍ଦୁକବି
୨୦୧୭୦୮୧୪-୧୮୧୦

# ମୋ ଦେଶ, ମୋ ତ୍ରିରଙ୍ଗା 60

ହେଲାଅଗଷ୍ଟପନ୍ଦର ତ୍ରିରଙ୍ଗାକୁଫରଫର
ଏଦେଶଆକାଶପରଦିଅଉଡ଼ାଇ,
ନିୟମରେଉଡ଼ାଇବ ଯଥାବେଳେଓହ୍ଲାଇବ
ରାଷ୍ଟ୍ର-ସଙ୍ଗୀତଗାଇବତାପାଶେଯାଇ;
ଏହିଆମଏକତାଚିହ୍ନ
ଜୀବନକୁକରିପଣରଖତାମାନ || -୧
ଉପରେକେଶରୀବର୍ଣ୍ଣ ଶୌର୍ଯ୍ୟସାହସଲକ୍ଷଣ;
ଶ୍ୱେତସତ୍ୟସନାତନଶାନ୍ତିସୂଚନ;
ନିମ୍ନଘଟକେହରିତ କୃଷିଉର୍ବରାସହିତ
ମନକୁକରେଜଡ଼ିତଅତିସଘନ,
ଶ୍ୱେତଭାଗେଅଶୋକଚକ୍ର;
କହେଏହିଦେଶଧର୍ମ, ଅଧ୍ୟାତ୍ମସତ୍ତ୍ୱ || -୨
ସତୁରିବରଷତଳେ ଏପତାକାଭକ୍ତିବଳେ
ଏଦେଶସ୍ୱାଧୀନକଲେଆମପୂର୍ବଜ;
କେତେକେତେବୀର, ତ୍ୟାଗୀଏଦେଶଗୌରବଲାଗି
ଏକତ୍ରଉଠିଲେଜାଗିତୋଳିଏଧ୍ୱଜ;
ତେଜିଜାତିଧର୍ମବିଭେଦ
ବିସର୍ଜିଲେଧନମାନଶୋଣିତସ୍ୱେଦ || -୩
ସୁରସାଏ, ଜଗବନ୍ଧୁ, ଗାନ୍ଧୀଠାରୁଗୋପବନ୍ଧୁ,
ଢାଳିରକ୍ତସ୍ୱେଦବିନ୍ଦୁକଲେସଂଗ୍ରାମ,
ଲଜପତ, ଗଙ୍ଗାଧର, ସୀମାନ୍ତଗାନ୍ଧୀଗଫର,
ଭଗତ, ସୁଭାଷଚନ୍ଦ୍ର, ଅବୁଲ୍‌କାଲମ୍;
ଖୁଦିରାମ, ରାସବିହାରୀ
ସ୍ୱରାଜ୍ୟସମରେଦେଲେଜୀବନହାରି ||-୪

ଉଦ୍ଧାମ, ମଙ୍ଗଳପାଣ୍ଡେ, ସବରକର, ରାଣାଡେ,
ସ୍ୱରାଜ୍ୟସଙ୍ଗ୍ରାମପିଣ୍ଡେଦେଲେଜୀବନ
ନେହେରୁଜହରଲାଲ ବେଗମ୍‌ହଜ୍‌ରତମହଲ,
ଅରୁଣା, ଲକ୍ଷ୍ମୀଶେଗଲ, ଜୀନତ୍‌ବେଗମ,
କେତେବୀରନାରୀପୁରୁଷ
ଦେଶପ୍ରୀତିଯଜ୍ଞେଦେଲେଜୀବନଝାସ ||-୫
ତ୍ୟାଗୋଦ୍ଭୂତଏସ୍ୱରାଜ୍ୟ ସଦାସେବ୍ୟସଦାପୂଜ୍ୟ
ଏଦେଶେନୁହେଁସ୍ୱୀକାର୍ଯ୍ୟଯବନତନ୍ତ୍ର;
କିହିନ୍ଦୁମୁସଲମାନ, ଇହୁଦୀକିଖ୍ରୀଷ୍ଟିୟାନ,
ଭୁଲିବୌଦ୍ଧ, ଶିଖ, ଜୈନଭେଦବିଚାର;
ରଖିବା ଏ ଦେଶର ଟେକ;
ଭାଳିବ ଖିଳ ମଣ୍ଡଳ ଭାରତ ଦେଖ ||-୬
ଲଲାଟେନ୍ଦୁକବି

## ଏକତ୍ର ଅନେକ ସଦ୍ୟଜାତ ଶିଶୁ ଦର୍ଶନେ 61

ଦିବ୍ୟ ଦେବଶିଶୁ କହ କେଉଁ ଦେଶୁ
ଆସିଲ ଉଷସୁ - ଏ ବିଶ୍ୱନ୍ତରେ;
ସର୍ବେ ପରିଚିତ ଅବା ଅବିଦିତ
ଅଛ ଏ ଯାବତ - ଏକ ଅପରେ ! ୧||

କହସୂନ-କନ୍ୟା କି ଲାଗି ସେ ଧନ୍ୟା
ଜନନୀ ମଧମା - ନେଲ ଆଦରି;
ଥିଲା କି ଆର୍ଷେୟ ମାତୃ ଗର୍ଭାଶୟ,
ଲାଗୁଥିଲା ବେଗେ- ଯାଏ ନିଃସରି ? -୨||

ଦେଲା କି କଷଣ ହୈମନ ଉଷ୍ମନ
ଅନ୍ଧ ନିବନ୍ଧନ - ରୁଦ୍ଧ କୋଠରୀ;
ଜାଣି ପାରୁଥିଲ, ଶ୍ୱେତ ପୀତ ନୀଳ,
ଅବା ଜାଣୁଥିଲ - ଦିବା କର୍ବରୀ ? -୩||

ହେଉଥିଲା ମନ ଜନନୀ ଚୁମ୍ବନ
ଜନକ ଲମ୍ବନ - ଲଭିବ ବୋଲି;
ନେବେ ଭଗ୍ନୀ ଭାଇ ବିରଟେ ଲୋଟାଇ,
ଗଳକେ ଜଡାଇ - ଧରିବେ ତୋଳି ? -୪||

ପଡୁଥିଲା ମନେ ବିଗତ ଜୀବନେ
ଆତ୍ମୀୟ-ସ୍ୱଜନେ - ପରିଷ୍ୱଜନ;
ସିନ୍ଧୁ ନଦୀ ସର ବନ ଗିରି ଝର
ଭ୍ରାମର ନଗର - ପରିଭ୍ରମଣ ? -୫||

ଆସୁଥିଲା ହେଜ ସେଦୂର ରାଇଜ
ଛାଡି ଯାହା ସଜ - ଆସିଲଚାଲି,
ସେ ଜଳ ବତାସ ବାଶୁରା ବିବାସ
ଗିରୀଶ ବାରୀଶ - ଉର୍ବରା ବାଲି ? -୬||

ବରିଲ ଯେ ଧାମ ସେ ବଡ ବିଷମ
ଆରାମ ବିରାମ - ବଡ ଦୁଷ୍କର;
ସୁଖେ କଟୁ ତୁମ କାଳକ ଏ ଧାମ,
ପରେ ଏହା ନାମ- ମୁଖେ ନ ଧର || ୭||

ଲଲାଟେନ୍ଦୁକବି୨୦୧୭୧୦୨୨୨୨୨୨

# ଗୁରୁଦିବସର ବାର୍ତ୍ତା 62

ପ୍ରତି ବର୍ଷ ସେପ୍ଟେମ୍ବର- ବର୍ଷାଙ୍କ ପଞ୍ଚମ ଦିନ
ଗୁରୁଦିବସ ଦେଶର ଛାତ୍ରଙ୍କ ଉତ୍ସବେ ଗଣ୍ୟ ||୧
ବାଷଠି ମସିହାଠାରୁ ଆଜି ଯାକେ ପ୍ରତିବର୍ଷ
ପାଳିତ ହୁଏ ସେ ଗୁରୁ- ଦିବସ ଦେଶେ ସହର୍ଷ ||୨
ଆମରି ମହାମହିମ ଦ୍ୱିତୀୟ ସେ ରାଷ୍ଟ୍ରପତି;
ଥିଲା ନୀତିଶାସ୍ତ୍ର, ଧର୍ମ ଅଧ୍ୟାପନା ତାଙ୍କ ବୃତ୍ତି ||୩
ସର୍ବପଲ୍ଲୀରାଧାକୃଷ୍ଣ ନାମେ ସେ ଯୁଗପୁରୁଷ
ତାଙ୍କରି ଜନମ ଦିନ ଏ ଭାବେ ମନାଏ ଦେଶ ||୪

ଆସ୍ଥାର ସଙ୍କଟ ପୁଣି ଆସ୍ଥାର ପୁନରୁତ୍ଥାନ
ସମ୍ବନ୍ଧେ ସେମହାମୁନି ପୁସ୍ତକ କଲେ ରଚନ ||୫
ଏ ଦେଶ ଦର୍ଶନଚର୍ଚ୍ଚା, ଏ ଦେଶ ପ୍ରାଚୀନ ଧର୍ମ,
ଇତିହାସ, ଶ୍ରଦ୍ଧା, ଅର୍ଚ୍ଚା ବିସ୍ତାରି କହିଲେ ମର୍ମ ||୬
ଏ ଦେଶେ ନଜାଣେ କିଏ ଗୁରୁଙ୍କ ଉଚ୍ଚଆସନ;
ପୂଜ୍ୟ ପିତାମାତା ସିଏ, ପୂଜ୍ୟ ବ୍ରହ୍ମସନାତନ ||୭
ଶରୀର ସୌଷ୍ଠବ, ରୂପ, ଧନ, ଜନ ଅକଳନ
ଗୁରୁପୟର କୁଟପ ନ ପୂଜିଲେ ଅକାରଣ ||୮

କଣ୍ଠାଗ୍ରେ ବେଦ-ଅକ୍ଷର ଜିହ୍ୱାଗ୍ରେ ଷଡଦର୍ଶନ
ଶ୍ରୀଗୁରୁପଦକାନ୍ତାର ନ ପୂଜିଲେ ଅକାରଣ || ୯
ସ୍ୱଦେଶେ ଅସୀମ ଯଶ ବିଦେଶେ ନାମକୀର୍ତ୍ତନ
ଗୁରୁପଦତାମରସ ନ ପୂଜିଲେ ଅକାରଣ ||୧୦
ଜଗତ ବସ୍ତୁସକଳ କଲେ ହେଁ ବାସମଣ୍ଡନ;
ଗୁରୁ ବିକ୍ରମ କମଳ ନ ପୂଜିଲେ ଅକାରଣ ||୧୧
ସୁଷୁମ୍ନା-ବ୍ୟାଦାନତନ୍ତ୍ର- ସିଦ୍ଧି ମନ୍ତ୍ର ସୂଚ୍ଚାରଣ;
ଶ୍ରୀଗୁରୁ ଅଙ୍ଘ୍ରିପୁଷ୍କର ନ ପୂଜିଲେ ଅକାରଣ ||୧୨

କଳା ଶିଳ୍ପ ସର୍ବବିଦ୍ୟା ପ୍ରୟାଣେ ଗୁରୁ ଅନନ୍ୟ;
ଶ୍ରଦ୍ଧା ଭକ୍ତି ଡୋରେ ବନ୍ଧା ଗୁରୁ-ଶିଷ୍ୟ ଧନ୍ୟ ଧନ୍ୟ ||୧୩
ଏହି ଭାବ ରଖି ମନେ ପାଳିବ ଗୁରୁବାସର;
ତେବେଏ ପବିତ୍ର ଦିନେ ମିଳିବ ପୁଣ୍ୟ ଦୁଷ୍କର ||୧୪

ଲଲାଟେନ୍ଦୁକବି

## ବରଦିଅସରସ୍ୱତି ! 63

ଶାର୍ଦ୍ଦୀ-ସରସ୍ୱତି !
ବାଗ୍‌ଦେବୀ-ଭାରତି !
ଆରତ-ଆରତି
ଘେନ ମା ଥରେ;
ଶକ୍ତି ଦିଅ ମାତଃ
ଭକ୍ତି ଭରା ଗୀତ
କରିବି ରଚିତ
ଦିନ ମାତରେ ||-୧||

ବିଧିବଧୂ ଇରା
ବାଣୀ-ବୀଣାସ୍ୱରା
ଉଦ୍ଗୀତମୁଖରା
ଅମୃତଝରା
ଗଳେ ଅବତରି,
ଅବା କର ଧରି,
ବର ଦିଅ ଭରି
ସିରା-ପ୍ରସିରା ||-୨||

ଆଶ୍ରା କରି ତୋର
ପୂଣ୍ୟ ଶ୍ରୀପୟର
ଅଧମ କୁମର
ବସିଛି ଲେଖି,
ରହି ପାଶେ ପାଶେ
ପରାଣ ପରାସେ,
ସର୍ବ ବିପର୍ଯ୍ୟାସେ
ରକ୍ଷ ନିରେଖି ||-୩
ଲଲାଟେନ୍ଦୁକବି **30-09-2017**

## ଶ୍ରୀକୃଷ୍ଣ ବନ୍ଦନା 64

ଯଶୋଦାନନ୍ଦନ ଶ୍ରୀରାଧାବନ୍ଦନ
ଗୋପିକାଚନ୍ଦନ ବିଶ୍ୱମୋହନ;
ସତ୍ୟଭାମା-ଧବ ସତ୍ୟଭା-ମାଧବ
ସୁଦାମାବାନ୍ଧବ ହେ ଶ୍ୟାମଘନ |
ବାରେ ଦିଅ ଦର୍ଶନ;
ଧରାଧାମେ କର ଅବତରଣ ||-୧||
ରୁକ୍ମିଣୀଗ୍ରହୀତା ରକ୍-ମଣିର କର୍ତ୍ତା
ରୁକ୍ଷମନହର୍ତ୍ତା ରୁକ୍ମବାହନ;
ଯଜୁର୍ସାମାଥର୍ବ ଅର୍ବୁଦ ନିଖର୍ବ
ଶାସନ-ସଗର୍ଭ ସାମଗାୟନ |
କର ପାପ ନାଶନ,
ମହୀ ଅବରୋହୀ ଅଧୁନାତନ ||-୨||

ଜାମ୍ବବତୀବୃଷ ଜମ୍ବକ ପୁରୁଷ
ମହିଷ ମହେଶ କାଳିନ୍ଦୀବର;
ପାଣ୍ଡବ ପୋଷକ ଖାଣ୍ଡବ ନାଶକ
ପୁତନା ଶୋଷକ କାଳୀୟବୈର;
ସତ୍ୟାଲକ୍ଷ୍ମଣାକାନ୍ତ;
ଭଦ୍ରାମିତ୍ରବୃନ୍ଦା ଜୀବିତନାଥ ||-୩

ଷୋଡଶ ସହସ୍ର ଶତ ସାମସୂତ୍ର
ସହାସ୍ୟ ସେବିକା ଗୋପିକା ସାଜି
ପଞ୍ଚ ମହାଭୂତ ତ୍ରିଗୁଣ ସହିତ
ନିତ୍ୟ ବଶୀଭୂତ ସାଥେ ବିରାଜି;
ନିତ୍ୟ ବଂଶୀ ନିଃସ୍ୱର
ରାଧା କରି କର୍ଷେ କୋଟି ଅନ୍ତର ||-୪

ଲଲାଟେନ୍ଦୁ କବି –
201710012240

## ଲେଖି ଦିଏ ବେଳ ଥାଉଁ ସମ୍ପୂର୍ଣ୍ଣ କବିତା 65

ସଞ୍ଜ ଗଡ଼ି ନିଶା ବଢ଼ି ତମ ହେଲେ ଘନ |
ମନେ ପଡ଼େ ବାଲ୍ୟ କାଳ ଆଲୋକ ଜୀବନ || -୧

ମନ ଖୋଜେ ଜନନୀର ଉତ୍ସଙ୍ଗେ ଶୟନ |
ସେ ଦିବ୍ୟ କୋଷପେ ଚାରୁ ନିଶ୍ଚିନ୍ତ ସ୍ୱପନ || -୨

ବାଲ୍ୟକାଳ କଳି ଗୋଳ ପ୍ରେମ ଆଲିଙ୍ଗନ |
ପୂର୍ଣ୍ଣିମା ଶୀତାଂଶୁ ତଳେ ସାହିତ୍ୟ ପଠନ || -୩

ଭଗିନୀ ଭାଇର ପ୍ରୀତି, ଭୀତି ଭରା କଥା,
ବୋହୂଚୋରୀ, ଅନ୍ତାକ୍ଷରୀ, ପୁଚିର କବିତା || -୪

ସରିତ ସୈକତେ ନିତି କେତେ ବାଲିଘର,
ଆଜି ଗଢ଼ା କାଲି ଭଙ୍ଗା ମାଟିର ସଂସାର || -୫

ବଡ ଜାଢ଼େ ପାଠ ପଢା    ଚାହାଳୀ ଦୁଆରେ,
ଧୂଳି ଖେଳ, ଲୁଚକାଳି    ତପ୍ତ ରବି କରେ ||    -୬

ପ୍ରଜାପତି କଙ୍କି ଧରା    ସାଙ୍ଗ ସାଥୀ ମେଳେ,
ପ୍ରସ୍ତରେ ତରଙ୍ଗ ଗଢ଼ା    ପୁଷ୍କରିଣୀ ଜଳେ ||    -୭

ଗୁରୁଜନେ ଦୂରୁ ଦେଖି    ହାତ ଠରା ଠରି,
ଅଧରେ ଅଙ୍ଗୁଷ୍ଠି ରଖି    ଆଖି ମରା ମରି ||    -୮

ଜୀବନ ଯାମିନୀ ନିଶା    ଘନ ଅନ୍ଧକାର,
କେ ଜାଣେ ସମ୍ମୁଖେ କେବେ    କି ଅଛି କାହାର ||    -୯

ପୃଷ୍ଠତଃ ଯୌବନେ ଯିଏ    କରେ କୋଳାହଳ |
ପୁରତଃ ଉଦ୍ୟତ, ହସ୍ତେ    ଅଦୃଶ୍ୟ ଜଞ୍ଜିର ||    -୧୦

କାହିଁ ବାଲ୍ୟକାଳ, ନଭେ    ପତଙ୍ଗ କ୍ଷେପଣ --
କି ତା' ଆଗେ ଆୟ ବ୍ୟୟ    ପୋଥି ପ୍ରକ୍ଷାଳନ ||    -୧୧

ଦୂରୁ ଦେଖି ମରୀଚିକା    ସଲିଳ ସନ୍ଧାନ --
ସରି କି ତା' ହେବ ସପ୍ତ    ସାଗର ପ୍ଲାବନ ||    -୧୨

ଆଶାର ପ୍ରବାହ, ପ୍ରଭା-    ଉଜ୍ଜ୍ୱଳ-ମାନସ,
ଅପରାନ୍ତେ ଉପଗତ    ତାମସ ଦିବସ ||    -୧୩

କାଳ ବିତେ ଛଳ, କଳି,    ସମ୍ବଳ-ଆଗ୍ରହେ |
ବିଲୁପ୍ତ ଆତ୍ମ-ଈକ୍ଷଣ    ବିଗ୍ରହେ ବିଗ୍ରହେ ||    -୧୪

ଜାୟା, ତନୁଜ, ତନୁଜା,    ପୌତ୍ର, ପୌତ୍ରୀ ମୋହ |
ମଧ୍ୟେ ମଧ୍ୟେ ପ୍ରତେ କେତେ    ଦୁର୍ଦମ୍ୟ, ଦୁଃସହ ||    -୧୫

ଦୁର୍ନିବାର ସମୀରଣେ    ପ୍ରହତ ବିହଗ |
ଖୋଜି ବୁଲେ ମାତୃକୋଳ    ଅଭୟ ଉତ୍ସଙ୍ଗ ||    -୧୬

ହେ ଆଦି ଜନନୀ ଘେନ    ଶତ ନମସ୍କାର |

ଉଲ୍ଲାପେ ନୟନେ ଲେପ ନିଦ୍ରା ଉପଚାର || -୧୭

ବେଳ ହେଲେ କୋଳେ ନିଅ ଆହେ ଆଦି ମାତା |
ଲେଖି ଦିଏ ଏ ଭିତରେ ସମ୍ପୂର୍ଣ୍ଣ କବିତା || -୧୮

ଏ ଯାବତ ଖଞ୍ଜି ନାହିଁ ତା ଅନ୍ତିମ ପଦ |
କହି ନାହିଁ ଅନୁଭୂତ ଅକୁହା ସମ୍ବାଦ || -୧୯

ଗଡ଼ି ଚାଲେ ବେଳ ନିଜ ଅଜଣା ଲକ୍ଷଣ |
ବେଳ ଥାଉଁ ସରି ଯାଉ ମୋ ଗୀତ ବିତାନ || -୨୦

ଅନୁଭବ ଲିପି ଗାରେ କରି ଅନୁବାଦ |
ଲେଖି ଯିବି ମନ ଗ୍ଲାନି ଶଙ୍କା ବିସଂବାଦ || -୨୧

ଲଲାଟେନ୍ଦୁ କବି ୨୪/୦୩/୨୦୧୭୦୧:୦୪

# ଦେବପୁରେ ମର୍ତ୍ତ୍ୟବାଳା 66

ଭାଳେ ବସି ବାଳା ନୟନୁ ଉଛୁଳା ଅଶ୍ରୁ ଜଳ ଢାଳି ଗଲେ
କାହିଁ ମୋ ମରତ ସାଙ୍ଗ ସାଥୀ ମିତ ଜଣେ ଏ ସରଗ ତଳେ ||-୧
କାହିଁ ସେ ନିର୍ଝର, ସରସୀର ନୀର, ବନ ଲତା ଗିରି ଗୁହା
କାହିଁ ସେ ପ୍ରଭାତ ଚାଟଶାଳୀ ଗୀତ, ଆଇମା କାହାଣୀ କୁହା ||-୨
ବହି ଖାତା ଖଡ଼ି, ସେ ଡାଳମାଙ୍କୁଡ଼ି , ଇଟିଲି ଘୁଗୁନି ଖିଆ;
ପୁଚି ବୋହୂଚୋରୀ, ଚାହାଳୀ ପାଚେରୀ ଉପରୁ ମାଙ୍କଡ଼ ଡିଆଁ ||-୩
ଧାଇଁ ଯାଇ ଅଙ୍କ, ଅବା ମନସାଙ୍କ, ଗପ ଗୀତ ଅନ୍ତାକ୍ଷରୀ,
ଆମ୍ବଡାଳ ଟଙ୍ଗା, କାଗଜର ଡଙ୍ଗା, ଆମ୍ବୁଲ ଆଚାର ଚୋରି ||-୪
ଦଉଡ଼ କଚଡ଼ା ଲଢ଼େଇ ଝଗଡ଼ା ବେଣୀ ବାଳ ଟଣାଟଣି,
ମୁହଁ ମୋଡ଼ା ମୋଡ଼ି, ପୁଣି ଯୋଡ଼ା ଯୋଡ଼ି ରାଣ ରଡ ବିବରଣୀ ||-୫
ନାହିଁ ରୋଗ ଟୀକା, ଦାନ୍ତ ନଖ ଦେଖା, ହୁଏନା ପ୍ରଭାତଫେରି,
ଏହାଠାରୁ ଭଲ ମୋ ମର୍ତ୍ତ୍ୟମଣ୍ଡଳ, କହି ଏଠୁ ଯିବି ଫେରି ||-୬

ଲଲାଟେନ୍ଦୁ କବି ୨୦୧୭୦୮୦୬-୧୭୪୩

# ଅହୋ ଭାଗ୍ୟ 67

ଦୟାଶ୍ରିତ ଶ୍ରଦ୍ଧାୟିତ ଶୁଣି ମିଠା କଥା
ପେଟ ପୂରେ ହଟେ ଦୂରେ ଦିନ ସାରା ବ୍ୟଥା ||-୧
ନାହିଁ କଳ କ'ଉଶଳ ଲେଖିବା ଚାତୁରୀ
କାଲି ପାଇଁ ରଖି ନାହିଁ କିଛି ବାହାଦୁରୀ ||-୨

ଅଳ୍ପ କିଛି ଜାଣିଅଛି ଦେଉଅଛି ଲେଖି;
ଘନଘନ ସଂଶୋଧନ, ପରଖି ନିରେଖି ||-୩
ଯେତେ ହେଲେ ବେଳେ ବେଳେ ରହିଯାଏ ତ୍ରୁଟି,
ତା ପ୍ରଭାବେ ହସ କେବେ ପାରିବ କି ଫୁଟି ?? ||-୪

ଏତେ ସରି ହେଇ କରି କେହି ରାଗ ଭରେ
ଗାଳି ମନ୍ଦ ଅପବାଦ କରି ନାହିଁ ଥରେ ||-୫
ନାହିଁ ଭୋଗ୍ୟ, ଖାଲି ରୋଗ୍ୟ ଲେଖା ପଢି ପଢି;
କେବେ କେହି ଯାଇ ନାହିଁ ମୋ ପରେ ବିଗିଡି ||-୬

ପାଠ ପଢା ପିଲା, ବୁଢା, ମଧ୍ୟମ ବୟସୀ,
ମୋ ଉପର ଶଂସାନୀର ଦିଅନ୍ତି ବରଷି ||-୭
ଥାଉ ସଦା ଏ ଶରଧା ଭାବ ମୋ ଉପରେ;
ମୋଠୁ ବଳି ଭାଗ୍ୟଶାଳୀ କିଏ ଜଗତରେ ? ||-୮

ଲଲାଟେନ୍ଦୁ କବି ୨୦୧୭୧୦୦୫୧୬୩୩

# ଆଶା 68

ହଜିଲା ଅତୀତକୁ
ଖୋଜିଲେ ମନ ମାରି;
ଖଞ୍ଜିଲେ ଶ ଆଠ,
ଭଜିଲେ ବୁକୁ ଚିରି,
ଲୋତକ ଧାର ଧାର
ବୋହିବା ଖାଲି ସାର,
ହଜିଲା ଦିନ ଆଉ
ଆସିବ ନାହିଁ ଫେରି,
କାନ୍ଦିଲେ ବୁକୁ ଚିରି ||-୧||

ଶୁଖିଲା ଫୁଲ ଯଥା
ବୃନ୍ତକୁ ଧରି ଧରି
ଝଡ଼ି ନ ପଡ଼ି ଘଡ଼ି
ଦି' ଘଡ଼ି ରହେ ଜଡ଼ି,
ମଣିଷ ବନ୍ଦି ରହେ
ସଂସାରେ ସେହି ପରି,
ଆଶାର ଅସରାକୁ
ଈଷତ ଆଶ୍ରା କରି,
ମରମେ କୋହ ଭରି ||-୨||

ଲଲାଟେନ୍ଦୁ କବି ୧୬- ୦୮-୨୦୧୫

## ସାହିତ୍ୟ ଦୋହନ 69

ଶବର ! ଶବ ର ଦହନ ନିତ୍ୟ
ସେ ଲାଗି ତା ନାମ ଦେହ;
ପିପାସା ଆଦିମ ଦମି, ଦାମ୍ଭିକ!
ଦେହ ଦହି ଥିଲେ
ଦୋହିବ ସାହିତ୍ୟ ଲେହ |
ବାଣୀପୁତ୍ର: ବିନମ୍ର ଲଲାଟେନ୍ଦୁ କବି

## ଅଭିସାର ଶେଷ 70

ନାହିଁ ଧାଇଁ ଧରିବାକୁ ମିଥ୍ୟା ମରୀଚିକା, ଭାସିବାକୁ କଳ୍ପନାର ଭେଳା !
କର ନିନ୍ଦା ଅପବାଦ ଚରିତ୍ରହନନ,
ଏ ନୟନେ ନାହିଁ ଆଜି ଭବିଷ୍ୟ ସପନ;
ସମ୍ମୁଖେ ଅମୃତମୟ ଚିର ସହଚର ମରଣର ଅଭିସାର ବେଳା |

ମୋ ତୂଳୀ ରଙ୍ଗରେ ଯଦି ଥାଏ ଭିନ୍ନ ରଙ୍ଗ, ଘେନିବାକୁ କେହି ଯୋଗ୍ୟ ଯୋଗ୍ୟା
ପାଇବାର ନାହିଁ କିଛି ଲୋଡ଼େ ନା, ଲୋଡ଼େ ନା;
ହାରିବାର କି ବା ଅଛି, ଡରେ ନା ଡରେ ନା,
ଅକୁଣ୍ଠେ ଯତନେ ତାଙ୍କୁ ଦେବି ଅବାରିତ, ମଣି ନିଜ ଅପତ୍ୟ ଅପତ୍ୟା |

ସ୍ୱାର୍ଭିକ ଶାବକେ କେବେ କରି ନାହିଁ ମନା, କହିଛି ତ ଘେନ ଥାଉଁ ବେଳ;
ଆଜି କଥା ଭିନ୍ନ କାଲି, କିଏ ପାରେ କହି,
କା' ହାତେ ନ ଥାଏ କିଛି, ମୋ ହାତେ ବି ନାହିଁ,
ଅଳପ ଶରଧା ଥିଲେ ଶୀଘ୍ର ଘେନ, ମୋ ଶରୀରେ ଥାଉଁ ଥାଉଁ ବଳ ।

ଅଭିସାର ଅନ୍ତ ହେଲେ କଳା ଶିକ୍ଷ କେହି ନେଇ ନାହିଁ, ଯିବନି ମୋ ସାଥେ,
ନ ଶିଖିଲେ କେହି ଏହି ମର୍ତ୍ତ୍ୟର ସମ୍ପଦ, ପଡ଼ି ଝଡ଼ି ସଢ଼ିବ ଜଗତେ ।

ଲଲାଟେନ୍ଦୁ କବି ୨୦୧୬୧୦୨୪୧୨୪୦

## ଶେଷ ଅଭିସାର 71

ରକ୍ତ ଅଧରେ ତପ୍ତ ରୁଧିରେ ଚୁମ୍ବନ ଗାର ଦେଲ ଟାଣି;
ତନ୍ତୁକୀ ତଳେ ମନ୍ଦ୍ର ବିଲୋଳେ କମ୍ପନ ତୋଳି ବିମୋହିନୀ !! -୧

ମନେ ଯଉବନେ ମୂର୍ଚ୍ଛନା ତାନେ ରାଣୀ, ରାଜମାତା, ଲମ୍ବିନୀ !
କି ଅବା ରୁଚିର ପ୍ରୀତି-ରାଜ୍ୟର ମୃଦୁଳା ଆଲୋକା ନନ୍ଦିନୀ || -୨

ଦୀପ୍ତ ପ୍ରହାସେ ପୂର୍ଣ୍ଣ ବାସର ସମ୍ଭ୍ରମ ତାନେ ଦେଲ ଭରି;
ଦୁଷ୍କର କରେ ଦୁସ୍ଥ ଜୀବନେ ଭାମିନୀ ସ୍ୱାମିନୀ ସହଚରୀ || -୩

ଜନନୀ ଭଗ୍ନୀ କନ୍ୟା କାମିନୀ ପ୍ରାଣ ସଙ୍ଗିନୀ ତୁମେ ମୋର;
ଯତ୍ନେ ରଖିବ ପ୍ରତ୍ନ ଏ ଜୀବ ଚାହଁ ତ କରିବ ଜର୍ଜର ।
ଇତସ ପୁରତଃ ଓତ ଲମ୍ବିତ ମରଣ ମଧୁର ଅଭିସାର । -୪

ଲଲାଟେନ୍ଦୁ କବି

୨୦୧୬୧୦୨୩

ତନ୍ତୁକୀ= ଧମନୀ; ବିଲୋଳ= ଅସ୍ଥିର; ମନ୍ଦ୍ର= ମଧୁର, ରୁଚିର; ଲମ୍ବିନୀ= ଯେ ଝୁଲୁଥାଏ, ଆଶ୍ରିତା, ହାର; ପ୍ରହାସ= ହାସ୍ୟ, ନୃତ୍ୟ, ଚାକ୍‌ଚକ୍ୟ; ସମ୍ଭ୍ରମ= ଉତ୍ତେଜନା, ଅତ୍ୟାଗ୍ରହ; ଇତସ୍= ଏଣିକି, ଏହାପରେ, ଏଠରେ;

# ବିହାର ତୃଷା 72

ପ୍ରାଚୀ ପର ଦେଶେ ତପନ ବିଭାସେ
ପ୍ରତୀଚୀ ସେ ପାରେ ବାରିଧି ବାରି;
ଉପ୍ପାର ଦିଗନ୍ତ ଧାବିତ ପ୍ରଚେତ
ବାତୁଳ ଅନ୍ତର ଦିଏ ମୋ ଭରି ||

ଅଧର ଅଧୀର, ସ୍ଫୁରି ଉଠେ ସ୍ୱର
ବିଦାୟ, ବିଦାୟ, କହିବି  ବୋଲି;
ବାରିଧର ଜଳେ ତରା ରାଶି ମେଳେ
ନଭସ୍ଥଳେ ଏବେ ଯିବି ମୁଁ ବୁଲି || -୧

ଲମ୍ବିତ ଅଜ୍ଞାତ ଦୀର୍ଘ ଶ୍ୱେତ ପଥ
ଅଜଣା ଅମ୍ବର ଅଚଳ ଚୂଳ;
ଭାସ୍ୱତ ଭାସ୍କର ସାଥୀ ଏବେ ମୋର
ସହଚର ଦୂର  ନକ୍ଷତ୍ର ମାଳ ||

ଅଙ୍ଗେ ଅଙ୍ଗେ ଜାଗେ ନିସର୍ଗ ଉତ୍ସଙ୍ଗେ
ଅଦମ୍ୟ ଅସୀମ ବିହାର ତୃଷା;
ଯେ ଦିନୁ ଶୁଣିଲା ମୋ ବେନି ଶ୍ରବଣ
ନଦୀ ବନ ଗିରି ସରାଗ ଭାଷା || -୨

ରୁଚିର ନିସର୍ଗ ପାରେ ରାତ୍ରୀଦିନ
ବାୟସ ବାଭୁଡ଼େ ଶାବକ ଉଡ଼େ;
ଶିଶୁ କିଶଳୟ ଉନ୍ମନା ଜୀବନ
ପ୍ରତ୍ନ ପତ୍ର ଝଡ଼ି ଭୂତଳେ ପଡ଼େ ||

ଅଛି ତୁମ ସାଥେ,   ଯିବି ପର ପାର,
କି କାରଣେ କିଏ ଦେଲେ ପଚାରି,
ପ୍ରତିଭାଷା ଦେବେ ଚନ୍ଦ୍ରମା ନକ୍ଷତ୍ର
ଶ୍ୱେତଜ୍ୟୋତି-ପଥ, କାନନଗିରି ||-୩
ଲଲାଟେନ୍ଦୁ କବି            ୨୦୧୬୧୨୧୪-୦୮୦୫

## ଦେଖିବ ଲୁହ 73

ବିଜନେ ବଜାରେ ବାଜିଲେ ବାଜେ ଗୀତ ବାଜେଣି
ଜାଣିବ ଜଗତ ଜିଣି ମୁଁ ବାହୁଡ଼ିଲି ସଜନୀ । ।-୧-

ଲେଖୁ ନି ଲେଖନୀ ଗାର, ଏ ମୋର ରକତ-ଛିଟା;
କିଏ କହେ ଦୁଃଖୀ-ଦରଦ କିଏ କହେ କବିତା । ।-୨-

ଯତନେ ରଖିଛି କରତି ଛାତି, ତାତିଲା ଧାସ,
ତହିଁରୁ ଗାର ମୋ ବାହାରେ ପୂର୍ଣ୍ଣମସୀ ଉଆଁସ । ।-୩-

ଲୁହ ଲେହନର ଆହ୍ଲାଦେ ଦହି ମୋହିଲେ ମନ
କି କାର୍ଯ୍ୟେ କେ କଲା ଆଦର କଲା କେ ହୀନିମାନ ? ।-୪-

କରଣୀରେ ଘୋରା ରକତ ସାଥେ ଗରମ କୋହ
କାରୁକୃତି କେବେ ଦେଖି ନ ସଖୀ ? ଦେଖିବ ଲୁହ । ।-୫-

ମୋ ବିଦାୟ ବେଳେ ଲୋତକ- ଜଳ ଢାଳିବେ ଲବେ --
ଦାୟାଦ ସାହିତ୍ୟ-ଅପତ୍ୟ ଜଣେ କେଣେ ତ ଥିବେ । ।-୬-

ସେ ଲୁହ ପରଶେ ହରଷେ ଜଳି ଯିବ ମୋ ଯୁଈ;
କହି ଦିଅ ସହି ତିଳେ ହେଁ ହେଜି ଝୁରିବ ନାହିଁ । ।-୭-

ଲଲାଟେନ୍ଦୁ କବି ୨୧-୦୯-୧୬

## ସୁନ୍ଦରୀ ପରିଚର୍ଯ୍ୟା 74



ଖୁଲଣାସୁନ୍ଦରୀ ଲଳନା ଆଗୋ ଛଳନାମୟୀ

ନୟନେ ଉଚ୍ଛଳ କଳନା ତାର ତୁଳନା ନାହିଁ ।

କେଉଁ ଭୂତିମନ୍ତବାଞ୍ଛିତା କାହା ସ୍ୱୀକୃତା ସତୀ,
ନରପତିସୁତା, ଦେବଦ୍ୱି- ହିତା, ଦୈବତଦୂତୀ,

ଅଥ ବା ପୟୋଧିନନ୍ଦିନୀ, ଦୂର ଅମ୍ବୁଦବାଳା,
କିମ୍ବା ଦୃଶାଦେଶେବିଭାସା ସଙ୍ଗେ ବିଷାଦ ବୋଳା ?

ଏ ମର୍ତ୍ତ୍ୟ ମଣ୍ଡଳେ କାଙ୍କ୍ଷିତ ନିଧି ମିଳେ କି ତବ,
କୁହ ଖୋଜି ଆଣିଦେବି କିଯେବେ ମୋ ପାଶେ ଥିବ ।

ଲଲାଟେନ୍ଦୁ କବି ଶ୍ରୀ ହରିଶରଣମ୍ ୨୦୧୭୦୨୦୪-୧୩୩୫

# ବିଦଗ୍ଧା ନାୟିକା 75



ଲଲାଟେନ୍ଦୁ କବି ୨୦୧୭୧୦୦୫୧୬୩୩

ଲେଖିବାକୁ ବାକି ରହିଛି ଏବେ ବି ହୃଦୟ ଗହୀର କଥା ।
ଧ୍ୱସ୍ତ ଅତୀତ କ୍ରନ୍ଦିତ ରୁତ ଉପଥ ବିଜନତା ।।। -୧

ଲେଖି ଦିଏ ଖାଲି ପଙ୍‌କ୍ତିଟେ ସିନା ଆଗକୁ ପାରେ ନା ଲେଖି ।
କୂଳବତୀ କୂଳେ ବାଳୀ ବସି ଭାଳେ ସୁନୀଳ କୁବଳ ଦେଖି ।। -୨

ବିଶ୍ୱପା ଦେଖି ଇନ୍ଦ୍ରପୁଷ୍ପା ସାରା ରାତି ଅଛି ଚାହିଁ,
ସରିତ ସଲିଳ ଚଳେ କଳ କଳ ସାଗରେ ମିଳିବା ପାଇଁ ।। -୩

ପାଟଳ ମୁକୁଳ ବିସ୍ଫାରି ଦଳ ଅଳି ପଥ ଅଛି ଚାହିଁ

| | | | |
|---|---|---|---|
| ଚୁମ୍ବନ ଭାରେ | ସ୍ନିଗ୍ଧ ଅଧରେ | ଲୁଣ୍ଠିତ ହେବା ପାଇଁ \|\| | -୪ |

| | | | |
|---|---|---|---|
| ଅଦ୍ମନି କୋଳେ | ଦଧିପୁଷ୍ପିକା | ମରଣ ସମ୍ପ୍ରହାରେ | |
| ଅର୍ଭଗ ପାଶେ | ବନ୍ଧନ ଆଶେ | ବଲ୍ଲଭା ଅଭିସାରେ \|\| | -୫ |

| | | | |
|---|---|---|---|
| କି ଲାଗି ଅବଳା | ଅଶ୍ରୁ ଉଚ୍ଛୁଳା | ଅର୍ଘ୍ୟର ଥାଳ ଧରି \| | |
| ଦୟିତ ଗଳାର | ସାଜିବାକୁ ମାଳା | ନିରତ ଚାଲିଛି ମରି \|\| | -୬ |

ଲଲାଟେନ୍ଦୁ କବି ଶ୍ରୀ ହରିଶରଣମ୍

ରୁତ= ଗୀତ; ଉତ୍ପଥ= ଭୁଲ ପଥ; କୂଳବତୀ= ନଦୀ; କୁବଳ= କ'ଇଁ; ବିଶ୍ୱପା= ଜହ୍ନ; ଇନ୍ଦ୍ରପୁଷ୍ପା= କ'ଇଁ; ପାଟଳ= ଗୋଲାପ; ଦଳ= ପାଖୁଡ଼ା; ଅଳି= ମହୁମାଛି; ଅଦ୍ମନି= ଅଗ୍ନି; ଦଧିପୁଷ୍ପିକା= ପ୍ରଜାପତି; ସମ୍ପ୍ରହାର= ଗତି; ଅର୍ଭଗ= ଯୁବକ; ବଲ୍ଲଭା= ପ୍ରେମିକା; ଦୟିତ= ପ୍ରିୟ

## ବୟସ ବାୟସ 76



| | | | |
|---|---|---|---|
| ଦେହର ଦହନ | ଲୁହର ଲେହନ | କାହାଣୀ କାହାଣ | କାହାକୁ କହିବି କହ \| |
| ଦିବସ ବିରସ | ନିଶୀଥ ବିବଶ | ବୟସ ବାୟସ | ଶମିତ ସରିତ ସୁଅ \|\| |

| | | |
|---|---|---|
| ବର୍ଷ ଯାକର | ସ୍ୱର୍ଣକାତର | ଗୋଟିଏ ଗୋଟିଏ ଦିନ, |
| ଶେଫାଳୀ ଦଳର | ତଲ୍ଲେ ମଳିନ | ପଳିତ ଗଳିତ ଚିହ୍ନ \|\| |

ଲଲାଟେନ୍ଦୁ କବି ୨୦୧୬୧୨୨୯-୨୨୩୦

## ମଧୁର ଦଣ୍ଡକାମନା 77



ଶିକ୍ଷକ ପୟର ଧରି ବାରମ୍ବାର ଅଧେତା, ବିଦ୍ୟା-ଅର୍ଥିନୀ;
କହନ୍ତି ଏ ଦଣ୍ଡ ଆମ ପ୍ରାଣ ପିଣ୍ଡ, ହେଉ ଆମ ଦୈନନ୍ଦିନୀ ||-୧

ଦୁହେଁ ଏକ ଆନେ କହନ୍ତି ଗୋପନେ– ଦେବା ନାହିଁ ପ୍ରଶ୍ନୋତ୍ତର;
ଏ ଭଳି ଶାସନ ଲଭି ପ୍ରତିଦିନ ଆନନ୍ଦେ ଫେରିବା ଘର ||-୨

ହାଲୁକା ହାଲୁକା ଧରିଥିବା ଏକା ଏକ ଅପରର କାନ;
ଥକା ଲାଗି ଗଲେ ପଡ଼ିବା ଭୂତଳେ କରିନେବା ଆଲିଙ୍ଗନ ||-୩
ଲଲାଟେନ୍ଦୁ କବି ୨୦୧୭୦୧୧୮-୦୭୧୬

## ବିଦାୟ ବାର୍ତ୍ତା 78

ଉତ୍କଳ-ଜନନୀ ମୋର ! ଅକିଞ୍ଚନ ଏ କୁମର
ବାଳୁତ କାଳୁ ତୋ ଗୀର ଅଛି ଆବୋରି ,
ଫିଟିବା ଆଗରୁ ମୁଖ ମଧୁର ତୋ ବାଣୀସୁଖ
ମରମେ ମୋର ପୁଲକ ଦେଇଛି ଭରି ;
ମାୟାବଳେ କାଳ କିନ୍ତୁ ଯାଉଛି ଚଳି
ଭବମଞ୍ଚେ ସଭିଙ୍କର ପୂରିବ ପାଳି | | ୧ ||

ମୋ ଜରା ଜର୍ଜର ଜଡ଼ ଝରିଯିବ ଧରାତଳ
ଶରୀରୁ ସରିଲେ ବଳ ଆଜି ବା କାଲି ,
ଛାଡ଼ିଗଲେ ପଞ୍ଚଭୂତ ତୋ ଯଶଃ-ପୂତ ସଂଗୀତ
ଆଉ କି ଭାବେ କହ ତ ପାରିବି ବୋଲି ?
ସେ ଗୀତ ଗାୟନ ପାଇଁ ଆସିବି ଫେରି
ମୋ ରାଣ ଲାଗିଲା ତୋତେ, ନେବୁ ଆଦରି | |୨ ||

ଯେବେ ପୁଣି ହେବି ଜାତ କେମିତି ଜାଣିବୁ ମାତଃ
ଏହି ତୋ ଅବୋଧ ସୁତ ଫେରିଛି ବୋଲି?
ବୁଲି ଯେବେ ଯିବି ଯାତ ଦେଖି ବର୍ଣ୍ଣବୋଧ ଗ୍ରନ୍ଥ
ନେବା ପାଇଁ ଟେକି ହାତ କରିବି ଅଳି ;
ସେଇଠି ଜାଣିବୁ ମୁଁ ତୋ କୋଳ ସଙ୍ଗାଳି ,
ଆନନ୍ଦେ କାନ୍ଦିବୁ ଥରେ ଲୋତକ ଢ଼ାଳି | | ୩ ||

ଲଲାଟେନ୍ଦୁ କବି ୧୮ ଅକ୍ଟୋବର ୨୦୧୫

# ବିଳମ୍ବିତ ବୟସରେ 79

**ସଞ୍ଚର ଖସରା, ପୃଷ୍ଠତଃ ପସରା, ଚକ୍ଷକ୍ଷେ ଅସରା ନୀର,**
ସଡ଼କ ଖସରା ପିଠିରେ ପସରା ଆଖିରେ ଅସରା ନୀର
**ଉଷାର ଈଷତ ଇସାରା ଶାବର ଅସୁରା ଆସାରେ ଦୂର ||-୧**
ଉଷାର ସାମାନ୍ୟ ସଙ୍କେତ ଅସାଧୁ ଶର୍ବରୀ ଆକ୍ରମେ ଦୂର

**କାସାର ନୀରସ, ସଂସାର ରଭସ, ଅସାର ବୟସ ଉଭା;**
ସରସୀ ନୀରସ. ସଂସାର ଜହର, ବି-ଅର୍ଥ ବୟସ ଉଭା
**ଶାରିତ ତାରୁଣ୍ୟ ଅରଣ୍ୟ-ନାଶିତ; ଶରଣ୍ୟ ସମ୍ଭୃତ ଯୁବା ||-୨**
ରଙ୍ଗିନ ଯୌବନ ବନବାସେ ମୃତ; ଆଶ୍ରୟ ସମ୍ପନ୍ନ ଯୁବା

**ଆୟାସ ଉଷିତ, ତେଜସ ସ୍ତିମିତ. ସଞ୍ଚାର ଶାସିତ ବାସ;**
ଶ୍ରମ ବିଶ୍ରମିତ, ଶକ୍ତି ପ୍ରଶମିତ ଗତି ନିୟନ୍ତ୍ରିତ ଗୃହ
**ଶିଥିଳ ଶୋଣିତ, ମତି ବିଚରିତ, ଶାଣିତ ଅପତ୍ୟ ଆସ୍ୟ ||-୩**
ଶୀତଳ ରକତ, ମତି ବିଭ୍ରମିତ , ଶାଣଦିଆ ପୁତ୍ର ମୁହଁ

**ପୁରତଃ ପୂରିତ ସ୍ମାରିତ ପରୀତ, ପରାଭୂତ ଭୂତ ଅହ;**
ସମ୍ମୁଖରେ ଭରା ବିସ୍ମୃତ ଅତୀତ, ପରାସ୍ତ ବିଗତ ଦିନ
**ଅଗ୍ରତଃ ଉତ୍ପଥ କୂଟସ୍ଥ-ନିକେତ ପଞ୍ଚଭୂତେ ପାଥ-ଦାହ ||-୪**
ସମ୍ମୁଖେ ବିପଥ ଜୀବାତ୍ମା-ନିବାସ ପଞ୍ଚଭୂତେ ଅଗ୍ନି-ଦାନ

ଲଲାଟେନ୍ଦୁ କବି ଶ୍ରୀ ହରିଶରଣମ୍ ୨୦୧୭୦୩୩୧-୦୨୩୧

# ଆସିବେ ସିଏ 40

ଆମ ଗାଁ ବିଲ ଗହିରୀ ପାରି ସରିତ ଧାରା,
ତାପରେ ଛୋଟିଆ ପାହାଡ଼, କିଆ କେତକୀ ଘେରା || -୧

କିଆ ବୁଦା ପରେ ସରସୀ ପାରି ସଡ଼କଟିଏ;
ସେଇଥିରେ ଚଢ଼ି ମଟର- ଗାଡ଼ି ଆସିବେ ସିଏ || -୨

ମୃଦୁଳ ସମୀର ସତେ କି ତାଙ୍କ ଆସିବା ଆଶେ;
ଥରି ଥରି ଆଜି ପରାଣ ଭରି ଦିଏ ସୁବାସେ || -୩

ସୋରିଷ ଫୁଲରେ କି ଲାଗି ଏତେ ହଳଦୀ ମଖା ?
କହି ଦେଲା କିଏ ଆସିବେ ଆଜ ମୋ ପ୍ରାଣ-ସଖା ? -୪

ଫିକା ଫିକା ମେଘ ଦେଲାଣି ଏବେ ଅଳପ ଛାଇ;
ବେଗି ବେଗି ଯିବି ଏବେ ମୁଁ ତାଙ୍କୁ ଭେଟିବା ପାଇଁ || -୫

ମହକି ଉଠୁଛି ସେପାରେ କିଆ ବହଳ ବାସ;
ରହିବନି କାଳେ ବାସ ମୋ ସଖା ସହଳ ଆସ || -୬

ଟିକି ଚଢ଼େଇଟି କି ବୋଲି ଆଜି ଆସିଲା ଉଡ଼ି;
କିଚିରି ମିଚିରି ଗାଇଲା ଟିକି ଲାଙ୍ଗୁଳ ଝାଡ଼ି || -୭

ଥକି ଯାଉ ନାହିଁ ପାଦ ମୋ ଚାଲ କ୍ଷେତର ହିଡ଼;
କିଅ ବୁଦା ପାରି ଚାଲରେ ଡେଇଁ ବିଲ ପାହାଡ଼ || -୮

ଗାଡ଼ିରୁ ଓହ୍ଲେଇ ସାଥୀ ମୋ ଦେଲେ ମୋତେ ଅନେଇଁ;
ମଥାପରେ ଢାଙ୍କି ଓଢଣୀ ମୁହଁ ଦେବି ବୁଲେଇ || -୯

ପାଶେ ଆସି ଯେବେ କହିବେ ଆଗୋ କି ନେବ କୁହ;
ପୋତି ଦେବି ମଥା, ଝାଳେଇ ଯିବ ଲାଜରା ମୁହଁ || -୧୦

ପଚାରିଲେ ପାଶେ କି ଭାବେ ତୁମ କଟିଲ ଦିନ;

ଦୂରେ ଯାଇ ଖାଲି ଶୁଣେଇ ଦେବି ପାଉଁଜି ତାନ || -୧୧

କଅଁଳ ଭାଷାରେ ପକାଇ ରାଣ ଛୁଇଁଲେ ମଥା,
ଲାଜେଇ ଲାଜେଇ କହିବି ଯାଇ ଅଳପ କଥା || -୧୨

ଲଲାଟେନ୍ଦୁ କବି ୨୦୧୭୦୧୨୩-000୩

## ବନସ୍ତର ଗଜ 81

ବନର ଗଜ କି ଗଜର ବନ ଜାଣିଛ କିଏ ?
ଘରର ପୁଅ କି ପୁଅର ଘର, କି କଥା ଇଏ ? -୧
ଦେଉଳର ଦିଅଁ, ଦେବତାଙ୍କର ମନ୍ଦିର ଅବା;
ଘଟର ଜୀବ କି ଜୀବର ଘଟ ବସ ବୁଝିବା || -୨
ଭାଇର ଭାଇ କି ସାଥୀର ସାଥୀ, ବାପର ପୁଅ ?
ଶାଶୁର ବୋହୂ କି ଶ୍ୱଶୁର ଜୋଇଁ ନିଜର କହ ? -୩
ଘରଣୀ ଗିରସ୍ତ କେ କାହା ସାଥୀ ପାରିବ କହି ?
ସାତ ଜନମକୁ ସାତ ନିମିଷ ଗଲା କି ରହି ? -୪
ସାତଟା ଜନମ ଯିବାରେ ଦେଲ ଜଣକୁ ଛାଡ଼ି;
ଏ ସାତ ଜନମ ରହିଲା ବାକି କେତେଟା ଘଡ଼ି ?-୫
ଏତେ ଜନ୍ମ ସାଥେ ବିତାଇ ଛାଡ଼ି ପାରିଲ ଏକା;
ଏ ସାତଜନମ ବିତିଲେ ନିଶ୍ଚେ ଦେବ ତ ଧୋକା ?-୬
ବହିର ପାଠ କି ପାଠର ବହି ଭାବିଛ ମନେ ?
ବେଳଥାଉଁ ହୁଅ ସଜ ଗୋ ଘାଟ ଉଠିବ ଦିନେ || -୭

ଲଲାଟେନ୍ଦୁ କବି ୨୦୧୭୦୧୧୭-୨୧୧୨

## ଶିଶୁ କହେ ମୃତ ପକ୍ଷୀ ପାଶେ ଉଡ଼ିବ ମୋ ଟିକି ଚଢ଼େଇ 82



ଉଠିବୁ ଉଠିବୁ ବୋଲି ତୋ ପାଶେ ବସିଛି ଚାହିଁ;

ଆଉ କି ଉଠି ତୁ ମୋ ଲାଗି ଗୀତ ଗାଇବୁ ନାହିଁ ? -୧

ଟିକି ଚଢ଼େଇ ତୋ ଛୋଟିଆ ଥଣ୍ଟ ଛୋଟିଆ ଡେଣା;
ଛୋଟିଆ କାନ ମୋ ଶୁଣିବ, ଥରେ ତୋ ଗୀତ ଶୁଣା ||-୨

ଉଡ଼ି ଉଡ଼ି କେତେ ଗଢ଼ିବୁ ବସା ଟିକି ଚଢ଼େଇ ?
ତୋ ଲାଗି ଚାଳରେ ଡବାଟେ ଦେଇ ଅଛି ଝୁଲାଇ || -୩

ମାଆଠୁ ଲୁଚେଇ ଚାଉଳ ଧାନ ଦେଇଛି ରଖି,
ସେଇଠି ଖାଇ ତୁ ଖେଳ ମୋ ସାଥେ, ଉଡ଼ି ଆ ପକ୍ଷୀ ||-୪

କାହିଁ ତୋର ମାଆ, ତୋତେ ସେ କିଆଁ ଆସୁନି ଦେଖି ?
କେଉଁ ଗଛ ଡାଳେ ଥାଏ ସେ କହ ଆଣିବି ଡାକି ||-୫

କେବେଠୁ କହ ତୁ ଖାଇନୁଁ, ଅଛୁ ଭୋକ ଉପାସେ ?
ଖେଳନା ଗିନାରେ ଖାଇବୁ ମୋର, ଆସ ମୋ ପାଖେ ||-୬

ଖରା ଯାଏ ଗଡ଼ି ଗଡ଼ି ରେ ରାତି ଆସୁଛି ମାଡ଼ି,
କେମିତି ଫେରିବି ଘର ମୁଁ ତୋତେ ଏଇଠି ଛାଡ଼ି ?-୭

ନିତି ସକାଳରୁ ଉଠି ମୁଁ ତୋର ଶୁଣିଛି ଗୀତ,
ଏବେ କିଆଁ ପାଟି ଖୋଲୁନୁଁ ବାରେ କହ ମୋ ମିତ |-୮

କିଏ ଆସି ଏଠି ବସ ରେ ଜଗି, ଯିବି ମୁଁ ଘର,
ଖାଇ ନ ଥିବ ମୋ ଚଢ଼େଇ, ଆଣି ଦେବି ଆହାର ||-୯

ଖାଇ ସେ ଉଠିଲେ ନେବି ମୁଁ ତାକୁ ଡାକ୍ତରଖାନା,
ଭଲ ହେଇ ପକ୍ଷୀ ଉଡ଼ିବ ମେଲି ଛୋଟିଆ ଡେଣା ||-୧୦

ଲଲାଟେନ୍ଦୁ କବି ୨୨୦୧୬୧୧୨୮-୨୨୫୮

## ଶହୀଦ୍‌ର ବିଦାୟ ପରେ 43

ହୁଡ଼ି କି ବାହୁଡ଼ି ଆସିଲ ନାହିଁ ଗଲ ଯେ ଚାଲି?
ବିକଳେ ବିଳପେ ଅବଳା ବାଳା ଲୋତକ ଢାଳି ||-୧-

ଅମାବାସ୍ୟା ବାସି ଆସିବ, ଅବା ଶିବ-ଜାଗରେ ?
ଠକି ଗଲ ଗେଲି ଝିଅକୁ କହି ଆସିବ ଥରେ ||-୨-

ଏ ସନ ଅଶିଣ ଅସିତ ଶୀତ ନିଶୀଥ ନାଶେ
ବିହ୍ବଳେ ବଲ୍ଲଭା କାଟିବ କାଳ ମୁକୁଳା କେଶେ ||-୩-

ଶୁଭ୍ର ଚନ୍ଦ୍ରାଲୋକ ପୁଲକ ଲୋକେ ଗଲେ ଉଭାସି
ବିଜନେ ବିଧୁରା ବିଧବା ବାଳା ଥିବ ଉଦାସୀ ||-୪-

ଦ୍ବେଷୀ ପାଶେ ଦେଶ ହାରିବ ନାହିଁ ଶପଥ କଲ;
ଛାତିରୁ ରକତ ନିଗାଡ଼ି ଗାଢ଼ ନିଦେ ଶୋଇଲ ||-୫-

ରାତି ଗତେ ଦେଲ ଅରାତି ହାତେ ଜୀବନ ହାରି,
ଜାତି-ପ୍ରୀତି-ଝରେ ତଳତ୍ର ! ତନୁ ତଲ୍ଲୀନ କରି ||-୬-

ତୁମ ବଳି ବଳେ ଏ ମାଟି ବାଳା ଉର୍ଦ୍ଧ୍ୱ-ମଉଳୀ;
ଏ ଦେଶ ସୁତ ମୁଁ ଆନତ ହାତେ ହବିସ ତୋଳି ||- ୭-

ଲଲାଟେନ୍ଦୁ କବି ୨୧-୦୯-୨୦୧୬
ବଲ୍ଲଭା=ପତ୍ନୀ; ତଳତ୍ର=ସଶସ୍ତ୍ର ପ୍ରହରୀ;

## ଅଜଣା କବିର ଜୟ 84

ଆଦି ପ୍ରେମଗୀତ- କବି କିଏ ଭାବି ଲେଖିଲି କବିତାଟିଏ
ସେହି ଗୀତ ଶୁଣି କିଏ କିଏ ପୁଣି କଲେ କେତେ ହାଏ ହାଏ || -୧
ଅଜଣା କବିରେ ହଜିଲା ଛବିରେ କୌତୁହଳ ହେଲା ଜାତ
ମୁଁ କି ଭାବିଥିଲି ଛୁଇଁ ଯିବ ବୋଲି କା' ମନ ସେ ଛୋଟ ଗୀତ || -୨
ଜାଣେନା କି ହେଲା, ଏ ମନ କହିଲା ଦିଅ ଦିଅ ଶ୍ରଦ୍ଧାଞ୍ଜଳି;
ଅନୁମାନ କରି ଜାଣି ମୁଁ ନ ପାରି ଜିଜ୍ଞାସା କେବଳ କଲି || - ୩
ଛାଡ଼ି ଅଭିଧାନ ଲେଖନୀର ମୁନ ଚାଳି ଗଲି ଅସଞ୍ଜତେ;
ଯାହା ମୋର ମନେ ଆସିଲା ଯେ କ୍ଷଣେ ଲେଖି ଗଲି ସେହି ମତେ || -୪
ଭଲ ମନ୍ଦ ଜମା ନ କରି ତର୍ଜମା ସଭିଙ୍କୁ ଅରପି ଦେଲି;
କେ କହିଲା ଭଲ, କେ ଦେଖିଲା ଭେଲ; ସବୁ ମୋ ପ୍ରସାଦ କଲି || -୫
ମୁଁ ବି ତୁମ ପରି ବସି ଅଛି ଧରି ଲେଖିଲା ବେଳୁ ଏ ଗୀତ;

| | | | |
|---|---|---|---|
| ହେଉ ଗୁଣହୀନ | ଭାବନା ପ୍ରବଣ | ସେଥିରେ ଖୋଜେ ଅତୀତ \|\| | -୬ |
| ଫିକା ଫିକା ଦିଶେ | ବିଜନେ କିଏ ସେ | ଗୀତ ଲେଖୁଅଛି ବସି; | |
| ତାର କୃପା ରାଶି | ଯାଆନ୍ତେ ବରଷି | ଧରଣୀ ଉଠୁଛି ହସି \|\| | -୭ |
| ଦିଶେ ନାହିଁ ମୁଖ | ହରଷ କି ଶୋକ; | ନାହିଁ କିଛି ପରିଚୟ; | |
| ମନ ଖାଲି କହେ | ଯିଏ ହେଉ ସିଏ, | ଅଜଣା କବିର ଜୟ \|\| | -୮ |

ଲଲାଟେନ୍ଦୁ କବି ୨୦୧୭୦୫୦୫-୧୮୫୮

## ନବବର୍ଷୋତ୍ସବ ଗତେ 85

ଆର୍ଯ୍ୟ ଦେଶର
ନବ ବତ୍ସର
ଆସୁଛି ଅଳ୍ପ ଦିନେ;
ବାରୁଣୀ ସେ ପାରି
ବେପାରୀ-ସମନ
ହାରିବି ଦୂର୍ବା ବନେ ||-୧

ରସା ଆଶ୍ୱାସେ
ଉତ୍ସବ ମୋର,
କ୍ଳୈବ୍ୟ କଳ ନା ମୂଢ଼ !
ଭେଦ ସର୍ଜକ !
ପ୍ରାଜନେ, ପ୍ରହାରେ,
ଭାଜିବ ସକ୍ଥି  ହାଡ଼ ||-୨

ବିକ୍ରମ କରେ
ଶକ-ଅହର
ନିଷଦ ଶବ୍ଦ  ଶୁଣ;
ବୈରୀ ଚାତୁରୀ
ଚୂର୍ଣ୍ଣନକାରୀ
କରୁଛି ଗୁଞ୍ଜରଣ ||-୩

ଲଲାଟେନ୍ଦୁ କବି
୨୦୧୭୦୧୦୩-୨୨୫୨

## କବିତା -୨- 86

କବିପ୍ରିୟେ କାବ୍ୟାମୃତେ ଆର୍ତ୍ତଚକ୍ଷୁଲୋତକଲେଖନି !
ଅଦ୍ୟନ୍ତରହିତା ମାତଃ ବିଶ୍ୱଜନହୃଦୟବାସିନି ! -୧-

ଦୟାମୟି ଆଶିର୍ମୟି ସୁଲଳିତେ ହେ ବିଶ୍ୱଜନନି !
ଧରାବକ୍ଷେ ବ୍ୟଭିଚାରେ ତୁମେ ଯେବେ ହୁଅ ଉନ୍ମାଦିନୀ, -୨-

ବିପ୍ଳବଦୁନ୍ଦୁଭି ବାଜେ, କମ୍ପି ଉଠେ ସମଗ୍ର ମେଦିନୀ,
ଔଦ୍ଧତ୍ୟ ବିନାଶେ ସାଜ ଅବିଳମ୍ବେ ଶାନ୍ତା ଆହ୍ଲାଦିନୀ | -୩-

ବ୍ରହ୍ମାଣ୍ଡମହିମାଞ୍ଚାତେ ! ତୁମେ ସାଧ୍ୱୀ ତୁମେ ତପସ୍ୱିନୀ,
ଭୋଗ ତୁମେ ଯୋଗ ତୁମେ, ତୁମେ ଭୋକ୍ତ୍ରୀ ତୁମେ ହିଁ ଯୋଗିନୀ | -୪-

ଲଲାଟେନ୍ଦୁ କବି
୦୮ ଡିସେମ୍ବର ୨୦୧୫

## ମରୀଚିରେ ସରିଚି 87

ଏ କ୍ରତୁ ପୁଲହ ପୁଲସ୍ତ୍ୟ ଓ ଅତ୍ରି ଅଙ୍ଗିରା ବଶିଷ୍ଠ ମରୀଚି,
ସାତ ଋଷିଙ୍କର ତାରକା ମଣ୍ଡଳ ଏହିଠାରେ ବାବୁ ସରିଛି | -୧-

ଶେଷ ଦୁଇଟିକୁ ଯୋଡି ଯେବେ ବାପା ଟାଣିଦେବୁ ରେଖା ଏକ,
ଉଜ୍ଜ୍ୱଳ ନକ୍ଷତ୍ର ଦେଖିବୁ ଯାହା ସେ ଧ୍ରୁବତାରା ମନେ ରଖ | -୨-

ସୂର୍ଯ୍ୟ ଚନ୍ଦ୍ର ଗ୍ରହ ଜ୍ୟୋତିଷ୍କ ନକ୍ଷତ୍ର ସଭିଏଁ କରନ୍ତି ଗତି,
ଏକା ଧ୍ରୁବତାରା ସ୍ଥିର ସବୁଦିନେ ଉତ୍ତର ଦିଗେ ତା ସ୍ଥିତି | -୩-

ଧ୍ରୁବତାରା ପରି ଅଟଳ ରହିବୁ ନୀତିରୁ ହଟିବୁ ନାହିଁ,
କିଛି ନ ଦେ ମୋତେ, ମଲେ ନିଆଁ ଦେବୁ, ଶେଷ ଇଚ୍ଛା ଦେଲି କହି | -୪-

ବାଳୁତ ବୟସେ ବୁଝିଲି କିଛି ମୁଁ ପିତାଙ୍କ ଶେଷ ବଚନ,
ଛାତେ ସପ ପାରି ଶୋଇଥିଲୁ ଆମେ, ସେ ଥିଲା ଗ୍ରୀଷ୍ମ ଦିନ | -୫-

| | | | |
|---|---|---|---|
| ବଡ ହେଲି ଯେବେ | ଛାଡ଼ି ଭିଟାମାଟି | ଆସିଲି ବିଦେଶ କରି, | |
| ବୁଡି ରହିଲି ମୁଁ | ଜଞ୍ଜାଳ ଭିତରେ, | ଧରି ଦୁଇ କନ୍ୟା, ସ୍ତିରୀ | | -୬- |
| ଶିଶୁ କନ୍ୟା ଦୁହେଁ | ଶିଖିଲେ ମୋ' ଠାରୁ | ଚିହ୍ନି ସେହି ଗ୍ରହ ତାରା, | |
| ବଡ ଝିଅଟି ତା' | ଜେଜେବାପାଙ୍କର | ସାଜିଲା ଦୁଃଖ-ପାଶୋରା | | -୭- |
| କାଳର କବଳେ | ଜେଜେବାପା ତା'ର | ଗଲେ ଦୁନିଆଁରୁ ଚାଲି, | |
| ଜୀବନରେ କିଛି | ଦେଇ ତ ନ ଥିଲି, | ମୁଖାଗ୍ନି ଟିକକ ଦେଲି | | -୮- |
| କିଛି ଦିନ ଗତେ | ପୁଣି ସେଇ ଛାତେ | ଶୋଇଥିଲୁ ଆମେ ଯେବେ, | |
| ଝିଅ ପଚାରୁଛି – | ଜେଜେବାପା ବି ତ | ତାରା ହେଇ ରହିଥିବେ | | -୯- |
| ସପ୍ତର୍ଷି ମଣ୍ଡଳ | ନକ୍ଷତ୍ର ଭିତରେ | ଜେଜେବାପା କିଏ ମୋର ? | |
| କହି ଦିଅ ବାପା | ମନ ମୁଁ କରିଛି, | କରିବି ତାଙ୍କୁ ଜୁହାର | | -୧୦- |
| ଝିଅ କଥା ଶୁଣି | ଜିଭ ଶୁଖି ଗଲା; | କହିଲି ଏତିକି ଭାଷା – | |
| ମରୀଚିରେ ମାଆ | ସରିଚି ରେ ସବୁ, | ନ କର ଆଉ ସେ ଆଶା | | -୧୧- |

ଲଲାଟେନ୍ଦୁ କବି ୨୩ ଜୁଲାଇ ୨୦୧୪

## ପ୍ରଶ୍ତିତିର ପରପାରେ 44

ଉଆଁସ ନିଶୀଥ ବାସି
ଉଷସୀର ଅଂଶୁ ନାଶି
ଅଳସ ବାସର ଶେଷେ
ଅବଶ ତାମସ ନିଶି ||

ଆତୁରା ଉର୍ବରା ଧରା
ଧୂମିତ ମରୁତ ଦ୍ୱରା
ସରିତ ପ୍ରସ୍ରବ ଧାରା
ପଲ୍ଲବ ପ୍ରସୂନ ରାଶି || -୧

ଜନନୀ ଜଠରେ ଜଳେ,
ଶୈଶବେ ଶ୍ଳେଷ୍ମଣ କାଳେ,
କୈଶୋରେ କର୍ଦ୍ଦମ କୋଳେ,
ଯୌବନେ ଜାୟା ଜଞ୍ଜାଳେ;

ବୟସ ଆସନ୍ତେ ଖସି
ବିଷାଦ ବିରସେ ବସି
କାଳକୂଟ କଳେ ପୁଂସ:
ଶୁଷ୍କ-ସମ୍ପଦ-ସରସୀ ।          -୨

ଏ ରୂପେ ପ୍ରଷ୍ଠିତି ପାର
ରମେ ଦୀନ ହୀନ ନର
ବୃଥା ଶିରେ   ମାରେ କର
ପରିତଃ ବିଦ୍ୱେଷ ଦର୍ଶୀ ।।

ଲଲାଟେନ୍ଦୁ କବି          ୨୦୧୬୧୧୨୮-୧୨୨

## ଆହତ ପକ୍ଷୀ ଦର୍ଶନେ: **ଶବର କି ଲେଖିବ କବିତା**          ୪୨



ଟିକି ଚଢ଼େଇ ତୁ ଚିଟାଉ କେମିତି ଦେଲୁ ହଜାଇ,
କିଏ ସେ ଶବର ଏଡ଼ିକି ନିଷ୍ଠୁର ହୃଦୟ ନାହିଁ ।।          -୧

ଛୋଟ ମୋ ମନର ଛୋଟଛୋଟ କେତେ କଅଁଳ ଆଶା,
ସଖୀ ପରି ବୁଝୁ ତୁହି ଏକା ମୋର ପ୍ରେମର ଭାଷା ।।          -୨

ଜୀବ ମାଂସାହରୀ କଠୋର ଶିକାରୀ ମାରିଲା ଶର;
ରକତ ରଞ୍ଜିତ ପ୍ରଭାତ ସଂଗୀତ କି ହେବ ତାର ।।          -୩

କି ହେବ ତାହାର ସଂସାର ଯାକର ଯାତନା ସ୍ୱର,
ଛାତିର ରୁଧିର ପ୍ରେମପତ୍ର-ଗାରଟଣା ସ୍ୱାକ୍ଷର ??          -୪

ନର ପଶୁ ପକ୍ଷୀ କୀଟ ତରୁ ଲତା ମରମ ବ୍ୟଥା
କି ଜାଣେ ଶବର, ସେ କି ଗାଏ ଗୀତ, ଲେଖେ କବିତା ? -୫

ଲଲାଟେନ୍ଦୁ କବି ୨୦୧୬୧୨୧୬-୧୯୦୦

## ରଙ୍ଗଭୂମେ ଦୃଶ୍ୟାନ୍ତର 90

ରଙ୍ଗଭୂମେ ଦୃଶ୍ୟ ଦୃଶ୍ୟାନ୍ତର; ଜନ ମନେ ନଟ ଅବତରି
ଭାଳେ କେତେ ଅଭିନୟ ବାକି, ନାଟକଟା କେବେ ଯିବ ସରି || -୧

ସରି ନାହିଁ, ସରେ ନାହିଁ କେବେ ଏ ଜଗତେ କାହା ଅଭିନୟ;
ନାଟ୍ୟମଞ୍ଚେ ମଧ୍ୟାନ୍ତର ହେଜି ନଟ ଖୋଜେ ନିଜ ପରିଚୟ || -୨

ଅନ୍ତହୀନ ପଥ ଅନୁସରି ଜୀବନାଟା ଯାଏ ହଜି ହଜି;
ପଥ କିନ୍ତୁ ସରେ ନାହିଁ ଜମା ଦିଶା ପାରେ ଲକ୍ଷ୍ୟ ଖୋଜି ଖୋଜି ||-୩

ମାୟା ସବୁ ଛାୟା ସମ ଶେଷେ ଆଖି ଆଗେ ଆସେ ଭାସି ଭାସି;
କିଏ ଭୟେ ଚକ୍ଷୁ ଦିଏ ମୁଦି, କିଏ ଦେଖେ ନୟନ ଉନ୍ମେଷି || -୪

ପଥ ପ୍ରାନ୍ତେ ଆତ୍ମୀୟ ସୋଦର- ପ୍ରୀତି ପାଛ ମନେ ଦମ୍ଭ ଭରେ;;
ଅନ୍ୟଥା ସେ ପଥିକ ଯାଆନ୍ତା କେଉଁ ଦିନୁ ହଜି ଅନ୍ଧକାରେ || -୫

ଆନ ଏକ ରଙ୍ଗଭୂମି ତଳେ ଖୋଜି ନେଇ ନୂତନ ଭୂମିକା;
ନବ ହର୍ଷେ ନବ କଳେବରେ ଖୋଜନ୍ତା ସେ ନୂଆ ବନ୍ଧୁ, ସଖା ||- ୬-

## କାଳେ କାଳେ ଯଉବନ, କେତେ ନେବ ନିଅ 91

ନୁହଁ -- ଏମିତି ସେମିତି ଜଣେ
ମୁଁ ତ -- ଗୋଟିକେ କାହାଣେ ପଣେ;
ତୁମ ପାଇଁ ଏଠି ଦୋକାନ ଖୋଲିଛି
ଯାହା ପାଇବାର ସବୁ ମୁଁ ରଖିଛି
ଆସ -- ନେବ ହେଲେ ଜଣେ ଜଣେ,
କାହିଁ -- ଯାଅ ନାହିଁ ଏଣେ ତେଣେ || ୧

ଯିଏ -- ସମ୍ଭାଳି ପାରିବ ଆସ
ପାଶେ -- ହାଲିଆ ମେଣ୍ଟେଇ ବସ;
ରୁଣ୍ଡେଇ ପୁଣ୍ଡେଇ ନେଇଯାଅ ଭାଇ,
ମୋ ସଉଦା ପାଇଁ ଧନ ଲୋଡ଼ା ନାହିଁ
ତାକୁ -- ନଗଦ ବାକିରେ କିଣ;
ଲୋଡ଼ା -- ମାତର ଗୋଟିଏ ମନ ||୨
ଭାଇ -- ଭାଉଜକୁ ଦେବ ନେଇ,
ନାନୀ -- ଭିଣେଇକୁ ଦେବ ପେଇ,
ବୋହୂ-ପୁଅ ନେବେ ଝିଅ ଜୋଇଁ ଥିବେ
କୁଣିଆଁ ପଡ଼ିଶା ସଭିଏଁ ଚାଖିବେ
ତୁମ -- କୋଥଳି ମେଲେଇ ଦିଅ,
କେତେ -- ମୁଣ୍ଡେଇ ପାରିବ ନିଅ ||୩

ଆଉ -- ଏମିତି ଦୋକାନ ନାହିଁ
ଡାକି -- ମାଗଣା ବିକିବ କେହି;
ମିଳିବ ଛାତିର ଗରମ ବତାସ
ଗଳାରେ ଲାଗିଲେ ଲାଗିବ ହୁତାସ
ଏଠି -- ଲୁହ ସାଙ୍ଗେ ମିଳେ କୋହ
ସହି -- ପାରିବ ତ ନେଇ ସହ ||୪
ଯେବେ -- ବସିଥିବ ଏକା ଏକା
ମନ -- ଲାଗୁଥିବ ଥକା ଥକା
ହାଲୁକା ଲାଗିବ ଫିଟେଇ ଦେଖିବ
ନିଶୂନ ଘରଟା ଭରି ପୂରି ଯିବ
ମଥା -- ଭାବନାରେ ଯିବ ଡୁବି
ଭୂଇଁ -- ପାଦ ତଳେ ଯିବ ଦବି ||୫

ଖାଇ -- ପିଠି ସାରା ଟାଣ ଖରା,
ଫେଇ -- ବସିଛି ତୁମ ପସରା;
ନିଅ, ଛୁଆଙ୍କଠୁ ଢାଙ୍କି ଟେକିବ
ବୁଢ଼ା-ବୁଢ଼ୀ ଥିଲେ ଲୁଚେଇ ରଖିବ,
ଆସ -- ସମ୍ଭାଳି ପାରିବ କେହି
ଅଣ୍ଟି -- ଗଣ୍ଠି ଦିଅ ଫିଟେଇ ||୬

ଇଏ -- ପୁରୁଣା ହୁଏନି କେବେ
କାଳେ -- କାଳେ ଥାଏ ନୂଆ ଭାବେ
ଛନକା କରେ ତା' ବାଙ୍କ ଚାହାଣୀ
ଫାଙ୍କା ମନରେ ଆଙ୍କେ ଉଜାଣି
ପୁଣି -- ଘଡ଼ିକେ ଘଡ଼ିକେ ଆନ,
ତାର -- କାଳେ କାଳେ ଯଉବନ ||୭
ଏବେ -- ବୁଝି ନ ପାରିଲେ ନାହିଁ
ତୁମ -- ପାଇଁ ମୋର ଭାଷା କାହିଁ,
ଦୋକାନ କେମିତି ବନ୍ଦ ରଖିବି,
ଏ ମିଠା ପସରା ଏକେଲା ଖାଇବି ?
ମୋର -- ଭାବିଲେ ସହୁନି ଦିହ,
ତୁମ -- ଭାଗଟା ଜଲଦି ନିଅ ||୮

ଲଲାଟେନ୍ଦୁ କବି
୨୫-୦୯-୨୦୧୬

## ପ୍ରଭୁ ଏ କବି ପଦ ଉଠେଇ ଦେଉନ ? 92

ଶିଶୁ ପୁତ୍ର କହେ କି ଲାଗି ବାପା ହେ ସେ ଦିନୁ ଆସିନ ଥରେ ?
ମୋତେ ରାଗ କରି ମୋ ହୃଦ ବିଦାରି ଗଲ କି ଅଜଣା ପୁରେ ??

ଶିଶୁ ମନ କଥା ବୁଝିଲି ମୁଁ ଯଥା ଲେଖୁଛି କଲମ ଗାରେ;
କି ଲୋଡ଼ା ପ୍ରସଂଶା -- ଶିଶୁର ଏ ଭାଷା -- କି ଅଛି ମୋର ଏଥିରେ ?

ଜଗତର ପୀଡ଼ା କାବ୍ୟକାର-ଗଢ଼ା ସାହିତ୍ୟର ମୂଳ ନିଧି;
ପ୍ରଭୋ ! ହରି ନିଅ ଏ ପୀଡ଼ା ଦୁଃସହ, ନ ରହୁ କବି ଉପାଧି ||

କବିତା କେ କାହିଁ ଲେଖିବାର ପାଇଁ ରଖିଛ କି ଏ କଷଣ ?
ତୁମକୁ କି ମିଳେ କେ କେବେ ପାଇଲେ ପଦେ ଅଧେ ପ୍ରଶଂସନ ??

ଶ୍ରୀ ହରିଶରଣମ୍

[୨୦୧୭୦୩୩୦-୧୨୩୭]

# ପକ୍ଷୀର ବିମୋଚନ 93

ପକ୍ଷୀ ! ଏବେ ଯାଅ ଏଠୁ ଉଡ଼ି,
ନିର୍ଲକ୍ଷ୍ୟ ଅନିଳେ ହେମ ବର୍ଣ୍ଣ ପକ୍ଷ ଝାଡ଼ି,
ବତାସେ ଆବାସ ତାର ଯାଆନ୍ତେ ଉଜୁଡ଼ି,
ସାଥୀ ତୁମ ଗଲାଣି ବାହୁଡ଼ି ।। -୧

ଗୀତ ତାର ଯାଇଅଛି ହଜି;
ବସନ୍ତର ଅନ୍ତେ ଯଥା ଅଦୃଶ୍ୟ ମଳୟ,
ଭୂଧରୁ କୂପାର ପାରେ ସମୀର ବିଲୟ;
କେ ପାରିବ ତା ସରଣୀ ଖୋଜି !! -୨

ଯାଅ ଏବେ ଉଡ଼ି ଯା ତୁ ପକ୍ଷୀ;
ପକ୍ଷ ତୋର ସୁରୁଚିର, ବିସ୍ଫାରିତ ଆକ୍ଷି;
ଅଚଳ-ଶଇଳ ସିନ୍ଧୁ-ଉର୍ମିମାଳ ଦେଖି;
ଆକାଶେ ମୋ ବ୍ୟଥା ଗାଥା ଲେଖି ।। -୩

କେ ଭାଳିବ କିମ୍ପାଁ କଥା ତାର?
ସେ କି ଦେଖେ ଫେରି ନିଜ ଉଚ୍ଛିତ ସ୍ୱସାରେ,
ଗାଏ ତା ମଧୁର ଗୀତ ସୁଲଳିତ ଗିରେ,
ପ୍ରିୟ ପୁଷ୍ପ ଆଲମ୍ବେ ତା ଶିର, -୪

କେ କହିବ ? ସେ ତ ଦୂରବାସେ;
ସଙ୍ଗୀତେ ନିରେଭ ସେ ତ, ଲାସ୍ୟେ ଅଲକ୍ଷିତ,
ଉତ୍ସବ-ଚାକ୍ଚକ୍ୟେ ହୃଷ୍ଟ ଚକ୍ଷୁ ଅପେକ୍ଷିତ;
ତେଜିଛି ତା’ ଆବାସ ବିବାସେ ।। -୫

ବିକାଳେ କୂଳିନୀ କୋଳ ନୀରେ
ସ୍ଫୁରିଲେ ଭାସ୍କର-କରେ କେସର ତରଙ୍ଗ;
ସଙ୍ଗୀତ ମୁଖର ହୁଅ ସହସ୍ର ବିହଙ୍ଗ:
କାହା ସ୍ୱନ କିଏ ବାରି ପାରେ ?? -୬

ସେହି ଭାବେ ତୁମର ସେ ପ୍ରିୟ --
ପ୍ରଦୀପର ଶିଖା ସାଜି ଆସେ ତାରା ମେଳେ,
ସମୀର ଲହରେ ତା'ର ଦୀର୍ଘଶ୍ୱାସ ଖେଳେ;
ଚିହ୍ନିବାର ନ ଥାଏ ଉପାୟ || -୭

ଯାଅ ଉଡ଼ି, ଖୋଲିଛି ପଞ୍ଜର;
ସଜାଇବି ଦେଇ ତାକୁ ସୁପୁଷ୍ପ ସମ୍ଭାର,
ମଧ୍ୟାହ୍ନେ ଯା' ଫୁଟେ ଦେଖି କିରଣ ପ୍ରଖର;
ନ ଢାଳିବି ନୟନରୁ ନୀର || -୮

ଶୀତ ଅନ୍ତେ ପର୍ଣ୍ଣ ପୁଷ୍ପ ଧରି
ହସିବ ଈଷତ ହାସ୍ୟେ ଲଜ୍ଜିତା ଧରଣୀ,
ସତେ କି ସେ ପରିଣୀତା ନବିନା ରମଣୀ !
ସାଥୀ ତୁମ ନ ଆସିବ ଫେରି !! -୯

ମୂଳ ରଚନା: **The Bird's Release, Felicia Dorothea Hemans (25 September 1793 – 16 May 1835)**

ଅନୁବାଦ: ଲଲାଟେନ୍ଦୁ କବି

୨୦୧୭୦୨୦୩-୦୯୨୨

## ପ୍ରାର୍ଥନା 94

ଚିତ୍ତ ଯହିଁ ଶଙ୍କାହୀନ ଉର୍ଦ୍ଧ୍ୱସାନ ଶିର,
[ଉଚ୍ଚ]
ଅନୁପ୍ରମା ଗଙ୍ଗା ସମା ବିଶ୍ରମ୍ଭ ଝର୍ଝର,
[ଜ୍ଞାନ] [ନିଃଶଙ୍କ]

ଅଖଣ୍ଡ ସଂସାର ପାସ୍ତ୍ୟ ପ୍ରାକାର ବର୍ଜିତ,
[ଗାର୍ହ୍ୟ] [ପ୍ରାଚୀର]
ଅତଳ ସତ୍ୟ ଜଠରୁ ବ୍ୟାହାର ନିର୍ଗତ,
[ବାଣୀ]

ରତି ହୀନ ସଂସାଧନ ସଂସିଦ୍ଧି ରୋପିତ,
[ବିଶ୍ରାମ] [କ୍ରିୟା] [ପୂର୍ଣ୍ଣତା]
ଉହନ ସତତ ଯହିଁ ବ୍ୟସନ-ବିଷିତ,
[ତର୍କ/ସମାଧାନ] [ପୂର୍ବାଭ୍ୟାସ]-[ବିମୁକ୍ତ]

କୃତି-ଧୀତି-ଗତି ପ୍ରଭୋ ତବ ପ୍ରସାଦିତ,
[ପ୍ରଜ୍ଞା] [ଆହ୍ଲାଦିତ]
ମୋ ନିର୍ଗ ସେ ସ୍ୱର୍ଗଧାମେ କର ଉତ୍ତୋଳିତ ||
[ଦେଶ]
ଲଲାଟେନ୍ଦୁ କବି ୨୦୧୭୦୨୨୫-୨୨୩୦

## ନୂଆ ଆଉ ପୁରୁଣା ସମୟ 95

ସମୟ ସତତ ସ୍ରୋତ, ପୁରୁଣା କି ନୂଆ କିଛି ନାହିଁ;
ମନ ଖାଲି ନୂଆ ଖୋଜେ, ପୁରୁଣାକୁ କରେ ତ୍ରାହି ତ୍ରାହି ||-୧

ନୂଆ ଯେତେ ପାଏ ନର, ପାଇ କହେ ଇଏ କିଛି ନୁହେଁ;
ଘର ପରେ ଗ୍ରାମ, ଦେଶ, ପୃଥିବୀଟା ମୋର ହେଉ କହେ ||-୨

ପାରାବାରେ, ନଦୀନୀରେ ନୃତ୍ୟରତ ପରାର୍ଦ୍ଧ ତରଙ୍ଗ;
ନୂତନ ପ୍ରାକ୍ତନ ଭେଦ ନୟନର ଭୁଲାଣିଆ ରଙ୍ଗ ||-୩

ସମୟରେ ବିଲ ପରି ହିଡ଼ କିମ୍ବା ବାଡ଼ ବତା ନାହିଁ;
ବରଷଟେ ଚାଲି ଗଲା, ସବୁ କିଛି ସରି ଗଲା କାହିଁ ?-୪

ଅଧିକ ନିରେଖି ଦେଖ, ସମୟଟା ସଦା ଗତିହୀନ;
କାହିଁ ସେ ଆରମ୍ଭେ ଯାତ୍ରା, କେଉଁ ଲକ୍ଷ୍ୟେ କରେ ସେ ଗମନ ?-୫

ଗତି ନାହିଁ ସ୍ଥିତି ନାହିଁ କୃତି ନାହିଁ, ନାହିଁ ତା ଆକୃତି;
ଚାଲି ଗଲା କହି ମଥା କଚାଡ଼ିବା ମଣିଷ ପ୍ରକୃତି ||-୬

"ସମୟ ଆସିବ ନୂଆ, ସଂସାରରୁ ହଟିବ ଜଞ୍ଜାଳ;
ନ ରହିବେ କ୍ଷୁଧାହୀନ ତୃଷାହୀନ ନିର୍ଦ୍ଧନ କାଙ୍ଗାଳ !"

ଧନ ଧାନ୍ୟ ଜନ ମାନ ସବୁ ଥାଇ ଘଟୁଛି ଅନେକ:
ଆପତ୍କାଳେ କେ ନ ମିଳେ, ରିକ୍ତ ଚଳେ ହତାଶ ପଥିକ ||-୮

ଲଲାଟେନ୍ଦୁ କବି ୨୦୧୭୦୨୦୨-୦୦୧୨

## ନିତ୍ୟ ବାରମ୍ବାର 96

"ଅନିତ୍ୟ ସଂସାର ମଧ୍ୟେ ସକଳ ଅସାର |
ସାର ମାତ୍ର ସାଧୁବାର ପର ଉପକାର" || -୧

ଯେଉଁ ମୁହୂର୍ତ୍ତରୁ ତାହା ନ ପାରିବା କରି |
ଦେଇ ଯିବା ଆଶୀର୍ବାଦ ଭୀଷ୍ମଦେବ ପରି || -୨

ହେଉ ସେ ଶରର ଶଯ୍ୟା, ଫୁଲ କି କଣ୍ଟାର,
ତେଜି ତାକୁ, ଧରି ପୁଣି ନବ କଳେବର || -୩

ଫେରିବା ଏଇଠି ଘେନି ଶକ୍ତିର ସମ୍ଭାର --
ଲାଗି ରହୁ ଏ ପ୍ରକ୍ରିୟା ନିତ୍ୟ ବାରମ୍ବାର || -୪

ନିତ୍ୟ ବାରମ୍ବାର ବୋଲୁଥିବା ଦିବ୍ୟ ମନ୍ତ୍ରମ୍ ___
ହରିଶରଣମ୍, ଶ୍ରୀହରି ! ଶ୍ରୀ-ହରି ଶରଣମ୍ || -୫

ଲଲାଟେନ୍ଦୁ କବି ୦୬ ସେପ୍ଟେମ୍ବର ୨୦୧୪

ଏଥିରେ ବ୍ୟବହୃତ ପ୍ରଥମ ପଦଟି ବ୍ୟାସକବି ଫକୀର ମୋହନଙ୍କଠାରୁ ଉଦ୍ଧୃତ | ଅତଃ ତାଙ୍କ ପୂଜ୍ୟପାଦର ଶ୍ରେୟାର୍ଥେ ଏହାକୁ ଉଦ୍ଧୃତି ଚିହ୍ନ ଭିତରେ ଲେଖିଅଛି ||

## ନିଦାଘରେ କାହିଁ ତାତି 97

ନିଦାଘରେ କାହିଁ ତାତି, ପାରାବାରେ କି ବା ନୀର,
ଜର୍ଜର ଜଳିଲେ ଛାତି, ଝର୍ଝର ଝରିଲେ ଲୋତ୍ର ? -୧
କି ଉତ୍ତାଳ ନଭ ତଳ, ପାତାଳ କି ବା ଅତଳ,
ଉଚ୍ଛଳ ହେଲେ ଉଚ୍ଛଳ, ବ୍ୟାକୁଳ ଅନ୍ତରତଳ ?-୨
ଅଙ୍ଗାରେ କାଳିମା କି ବା, ଅମା ରାତି କି ଅନ୍ଧାର,
ଶ୍ରଦ୍ଧିତ ହେଲେ ଅରାତି, ଆପଣା ସାଜିଲେ ପର ?-୩

ଲଲାଟେନ୍ଦୁ କବି ୧୫-୦୨-୨୦୧୫/୦୯:୧୪

# ନୃତ୍ୟରତ ଶିଶୁ ଦେଖି ପାରାବାର ତୀରେ 98

ଆହା ରେ ଶିଶୁ  କରୁଛୁ କେତେ ନାଟ,
ପାରୁନୁ ଜାଣି ପବନ ଆସେ ଖରେ,
ଗରଜନଟେ ଶୁଭୁଛି ପାରାବାରେ,
ବିକଟାଳ ସେ, ନିର୍ଦ୍ଦୟ ବିକଟ |
ପବନର ବି ବିରତି ନାହିଁ ଲେଶ,
ଉଠୁଛି ଥରି ମଥାରେ ତୋର କେଶ |       -୧-
ଅବୋଧ ଏବେ ପାରିନୁ କିଛି ଜାଣି;
ପୁଣ୍ୟ ପରେ ପାତକ ଯାଏ ଜିଣି;
ଯେତିକି ବେଗେ ମମତା ଯାଏ ଘଟି
ତାହାଠୁ ବେଗେ କେ ଦିଏ ତାକୁ ଲୁଣ୍ଠି |
ଅପର ଲାଗି ବୁହାଇ ଦେଇ ଝାଳ,
ଶ୍ରମିକ ଯାଏ ମଶାଣି ମାଟି ତଳ |
ପଛରେ ଛାଡ଼ି ଫସଲ ଯେତେ ତାର,
କୁଆଡ଼େ ଯାଏ କ୍ଷେତରୁ ହଳଧର |
ଅବୋଧ ଯେଣୁ ମାଡୁନି ତୋତେ ଡର;
ଝଞ୍ଜା ଅବା ଉଗ୍ର ପାରାବାର ||       -୨-
କେହି କି କେବେ କହିନି ତୋତେ ପଦେ,
ସାବଧାନେ ତୁ ଚାଲିବୁ ପାଦେ ପାଦେ;
ବାରୂଢ଼େ ଥରେ କୋଟିର ଗଲେ ପଡ଼ି
କି ଭଳି ତାର ଦେହଟା ଯାଏ ପୋଡ଼ି;
କହିଲେ କିଏ ଜାଣିବୁ ସିନା ଧନ,
କହି ଦେବାକୁ ବଳୁନି ମୋର ମନ;
ତୁ ଏବେ ଶିଶୁ, ଅନେକ ତୋର ଆଶା,
ଏଣୁ କହୁଛି ଭିନ୍ନ ଏକ ଭାଷା ||
ଯେ ଯାହା ଦେଲେ ନେଇ ଯିବୁ ଆଦରି,
ସଭିଙ୍କୁ ତୋର ଆତ୍ମୀୟ ବିଚାରି;
ତୋ ମାଆ ପରି ଭୋଗିବୁ ଦିନେ ଜ୍ୱାଳା,
ପଡ଼ିବୁ ଭାଜି ଆସିଲେ ଶେଷ ବେଳା;
ଏବେ ତ ଶିଶୁ, ଅନେକ ତୋର ଆଶା;

କହିବି ତେଣୁ ଭିନ୍ନ ତୋତେ ଭାଷା ||
ଲଲାଟେନ୍ଦୁ କବି ୨୦୧୭୦୨୧୪-୨୦୫୬

## ନିୟତିର କବିତା (ପ୍ରଥମ ଅଭିରୂପ) 99

ଶରତ ହେମନ୍ତ ଶୀତ ବସନ୍ତ ଉଷ୍ମନ
ବରଷା ସଂଗୀତ କରିଅଛି ବିରଚନ;
ଶିଳ୍ପୀ କଳାକାର  ନାଟ୍ୟନାୟକର ଘର୍ମ
ଦେଖୁଛି ମୁଁ ଲେଖୁବାକୁ ଚାଳିଛି କଲମ ||-୧

ବଂଶ-କ୍ରୀଡ଼ାଚକ୍ର-ବାଳା ମୁକ୍ତ-ଇନ୍ଦ୍ରଜାଲ,
ଉଦ୍ରଥ-ପ୍ରାୟୁଧ, ହଟ୍ଟ–ଜନ ଦ୍ୟୁତ ଖେଳ,
ଦୁଷ୍ଟୀତ, କଳହରତ, ପ୍ରମତ୍ତ, ପାଗଳ
ଚକ୍ଷୁ ତଳେ ଛଳେ ଦେଖୁଅଛି ନେତ୍ରଜଳ ||-୨

ଦେଖୁଛି ଗୃହିଣୀ ଗୃହୀ, ସଧବା ବିଧବା,
କିଶୋର ବାଳକ ଶିଶୁ ପ୍ରୌଢ଼ ବୃଦ୍ଧ ଯୁବା,
ପ୍ରେମାତୁରା, ବିରହିଣୀ, ଅନୂଢ଼ା, ଲଟଭା,
ନିଷ୍ଫଳା ଯୋଷିତା, ତ୍ୟକ୍ତା, ସନ୍ତାନସମ୍ଭବା,-୩

ଶ୍ରମିକ ସୈନିକ ବ୍ୟବସାୟୀ କର୍ମଚାରୀ,
ଛାତ୍ର ଛାତ୍ରୀ ପ୍ରିୟ ପ୍ରିୟା ଉଞ୍ଛକ ପୂଜାରୀ,
କାମୁକ କାମିନୀ ସହଚର ସହଚରୀ,
ସକଳ ଈକ୍ଷଣେ ଦେଖୁଅଛି ଅଶ୍ରୁବାରି  ||-୪

ତହୁଁ ବିଶ୍ରମ୍ଭ କଳ୍ପନା କରି କିମ୍ପା ବୃଥା
ଜଳାଅ ବିନିଦ୍ର ରାତ୍ର-ପ୍ରଦୀପ ସଳିତା ?
ଦେଖୁଛି ପ୍ରଚ୍ଛନ୍ନେ ଦିନେ ନିୟତି ସଂହିତା :--
ଜୀବନ ତା' ବ୍ୟଙ୍ଗଭରା ବିଦ୍ରୂପ କବିତା ||-୫
ଲଲାଟେନ୍ଦୁ କବି                    ୨୦୧୬୧୨୨୪-୦୦୨୦

## ନିୟତିର କବିତା: ଦ୍ୱିତୀୟ ଅଭିରୂପ 100

ଗ୍ରୀଷ୍ମ ବର୍ଷା          ଶରତ ହେମନ୍ତ          ଶୀତ ବସନ୍ତ  ଦେଖୁ,
ବର୍ଷ ଯାକର          ବେଦନାର ସ୍ୱର          କବିତା ଦେଇଛି ଲେଖୁ;
କଳାକାର କବି          ଶିଳ୍ପୀ ନଟକ          ଚିତ୍ରକାରର ସ୍ୱେଦ,

ଦେଖୁଛି ବୁଝିଛି ଲେଖୁଛି କବିତା, ହେଉ ପଦେ ଦୁଇପଦ ||-୧
ବାଉଁଶରାଣୀର ବାଳା, ଜାଦୁଗରୀ ଐନ୍ଦ୍ରଜାଲିକ ଖେଳ,
କୁକୁଡ଼ା ଲଢ଼େଇ, ବାଜି ଖେଳ ଭିଡ଼, ହାଟ ବାଟ ଜୁଆ ମେଳ,
ମଦିରାମଧୁର ମତ୍ତ ବିଭୋର, ବାତୁଳ, କଳହରତ,
ସଭିଙ୍କ ନୟନେ ଗୋପନେ ଦେଖୁଛି ତପ୍ତ-ଶୋଣିତ ସ୍ରୋତ ||-୨
ଗୃହସ୍ୱାମୀ କୁଳ- ରମଣୀ ଦେଖୁଛି, ସଧବା ବିଧବା ନାରୀ,
କିଶୋର ବାଳକ ବୃଦ୍ଧ ଯୁବକ ଅର୍ଭକ ସୁକୁମାରୀ,
ପ୍ରେମପାଗଳିନୀ ବିରହିଣୀ ପୁଣି ଅନୂଢ଼ା ଲାସ୍ୟା ବାଳା,
ତ୍ୟକ୍ତା ଯୋଷିତା ଗର୍ଭଧାରିଣୀ କୁଳବଧୂ ନିଷ୍କଳା; ||-୩
ଶ୍ରମିକ, ରାଷ୍ଟ୍ର- ରକ୍ଷକ, ପଦ- ଧାରୀ, ଆକ୍ରୟକାରୀ,
ଅଧ୍ୟେତା, ପାଠକି- ନୀ, ଅଭିମାନୀ, ଭକ୍ତ, ପୂଜନକାରୀ,
କାମାତୁର, କାମ- ବସନାନମ୍ମା, ସହଚର, ସହଚରୀ,
ସବୁରି ନେତ୍ରେ ଦେଖୁଛି ଉଛୁଳା ରୁଦ୍ଧ ଲୋତକ ବାରି ||-୪
ନିସ୍ତାର ଲାଗି ସାଧୁଅଛ କେତେ, ଗାଉଛ ଚାଟୁକ ଗାଥା,
ରାତ୍ରୀଦୀପରେ ଇନ୍ଧନ ଢାଳି ନିଦ୍ରା ହାରୁଛ ବୃଥା;
ଗୋପନେ ପଢ଼ିଛି ଭାଗ୍ୟଦେବୀର ଖାତାର ଲିଖନ ଖିଏ;
ଜୀବନ ସେଥିରେ ବିଦ୍ରୂପଭରା ବ୍ୟଙ୍ଗ କବିତାଟିଏ ||-୫

ଲଲାଟେନ୍ଦୁ କବି ୨୦୧୬୧୨୨୪-

# ସେହି ଏବେ ମୋ ସମ୍ପତ୍ତି 101

ରଖିଥିଲି ଖାତା ମୋ ନିଜ କବିତା ନିଜେ ପଢ଼ି ଶୁଣିବାକୁ |
ଲେଖିପାରେ ବୋଲି ଦେଇ ତ ନ ଥିଲି କାହାରିକି ଜାଣିବାକୁ || -୧-

ପଢୁଥିଲି ବସି ଢାଳି ଅଶ୍ରୁରାଶି ନୀରବେ ମୁଁ ଏକାନ୍ତରେ |
କିଏ କାନେ କାନେ ଅମୀୟ ବଚନେ କହୁଥିଲେ ଧୀରେ ଧୀରେ || -୨-

"ଲେଖିଥିଲୁ ବାବୁ ତୋ କବିତା ସବୁ ଜାଳିବାକୁ ତୋ ଚିତାରେ ?"
ସେ ଦିବ୍ୟ ବଚନ ହେଲା ଗୁଞ୍ଜରଣ ମଧ୍ୟେ ମଧ୍ୟେ ଥରେ ଥରେ || -୩-

କହିଲେ ଆହ୍ଲାଦେ, "ପୁଣି ତୁ ଲେଖି ଦେ, ବାଣ୍ଟି ଯା ବନ୍ଧୁ ଭିତରେ ||
ମୁଁ ଥିବି ତୋ ସାଥେ ତୋର କର୍ମ ପଥେ ଆଦ୍ୟେ ମଧ୍ୟେ ଉପାନ୍ତରେ || -୪-

ବିଶାଳ ବର୍ତ୍ତୁଳ ଗୋଲକ ସମ୍ବଳ ମାଳ ମାଳ ସାଧୁଜନ |
ଜଣେ ତ କେ ଥିବ ଯା' ହୃଦ ଛୁଇଁବ ତୋର ହସ୍ତ ଆଲେଖନ || -୫-

ସେ ମଧ୍ୟ ମୋ ସୁତ କି ଅର୍ଥେ ବଞ୍ଚିତ ରହିବ ତୋ କବିତାରୁ
ପଥେ ପଥେ ତୃଣ ହେଉ ପରିପୂର୍ଣ୍ଣ, ମଧ୍ୟେ ମଧ୍ୟେ ଅଛି ତରୁ ||" -୬-

ସମୀର କମ୍ପନେ ରହି ରହି କାନେ ବାଣୀ ପଶେ ଥରି ଥରି |
ହୃଦୟ ନିସ୍ପନ୍ଦ ସ୍ଥିର ମୁଁ ନିର୍ବେଦ ଶୁଣୁ ଥାଏ ଡରି ଡରି || -୭-

ସେ କୋମଳଗୀରା ଦେବୀ କି ଅପ୍ସରା କି କରିବି ଅଭ୍ୟର୍ଥନା !
ଅଦୃଶ୍ୟ ଶରୀର, ବଚନ ମଧୁର; ଜାଣେ ନା ମୁଁ ପୂଜାର୍ଚ୍ଚନା || -୮-

ପ୍ରକମ୍ପିତ କଣ୍ଠେ ଭକ୍ତି-ଭୀତେ-ତ୍ରସ୍ତେ ପଚାରିଲି ପରିଚୟ |
ଧରି ସେ ମୋ ହାତ କରି କୋଳାଗ୍ରତ ଅଦ୍ଭୂତ ଦେଲେ ଅଭୟ || -୯-

କହିଲେ, "ଜନିତ୍ରୀ ନୁହେଁ, ବାଣୀଭର୍ତ୍ତ୍ରୀ ତୋର ବୋଲି ମୋତେ ଜାଣ |
ସାଙ୍ଗ ସାଥୀ ପାଇଁ ତୋ କବିତା ପୁଣି ଲେଖିବୁ ତୋତେ ମୋ ରାଣ ||" -୧୦-

ଭାଜିଗଲା ତନ୍ଦ୍ରା ଦେଖିଲି ତନ୍ଦୁରା ଶୂନ୍ୟ, ଦେବୀ ଅନ୍ତର୍ଦ୍ଧାନ |
କିଏ ସେହି ଦେବୀ କେମିତି ଜାଣିବି ? ଥିଲା ଖାଲି ବାଦ୍ୟତାନ || -୧୧-

ହରେଇଲି ସ୍ମୃତି, ହେଲା ମୋ ପ୍ରତୀତି, ଦେଖା ହେଲେ ସରସ୍ୱତୀ |
ସତ୍ୟ, ମିଥ୍ୟା, ଭ୍ରାନ୍ତି, କି ବା ବୁଦ୍ଧିଚ୍ୟୁତି, ସେହି ହେଲା ମୋ ସମ୍ପତ୍ତି || -୧୨-

ସେ ଦିବ୍ୟ ଝଙ୍କାର ନିରତ ସଞ୍ଚାର କାନେ କାନେ ଶୁଣି ଶୁଣି |
ବସି ନିଦ୍ରାତୁରେ କଲମର ଗାରେ ଲେଖିଲି କବିତା ପୁଣି || -୧୩-

ଲଲାଟେନ୍ଦୁ କବି
୦୩ ଫେବୃୟାରୀ ୨୦୧୬

## ପ୍ରେମର ପରିଭାଷା 102

ପ୍ରେମିକା ଗଳିରେ ବାଲିରେ ଧୂଳିରେ ଦି' ପାଦ-ତଳିରେ କଣ୍ଟା ଗଳିବା ବେଳେ |
ଶତଦଳ ଦଳ ମାଡ଼ିବାର ତୁଲ ଜାଣି ନ ପାରିଲ ଦିନେ ଥରେ କେବେ ହେଲେ,

ତେବେ -- ଅନ୍ଧାରେ ଘୋରତମ,
ଏବେ ବି ରହିଛ, କେମିତି ଜାଣିବ ତୁମେ କି ବୁଝିବ ପ୍ରେମ || -୧-||

ଆତତ ତିମିରେ ଇଷିକା ପତରେ ଭ୍ରଷ୍ଟ ଶିଶିରେ ତନ୍ଦ୍ରା ଘାରିବା ବେଳେ |
ପୀରତି ପ୍ରଚଳେ ତନ୍ତ୍ର-ବିକଳେ ଉଷ୍ମତା ଛଳେ ନିଦ୍ରା ଯାଇନ ତଳେ |
ହେଲେ -- କେମିତି ବୁଝିବ କୁହ
ପ୍ରେମରେ କେମିତି ଝରୁ ଥାଏ ଲୁହ, କେମିତିକା ଉଠେ କୋହ || -୨-||

ବର୍ଷା ଲସତେ ସ୍ଫୁଟିତ ତଡ଼ିତେ ହୃଦୟ ଗର୍ଭେ ତୀବ୍ର ଶୋଣିତ ପାତେ |
ବଧିର କର୍ଣ୍ଣେ ସ୍ତବ୍ଧ ମଉନେ ଘୋର ନିର୍ଜନେ ବିଚ୍ଛେଦ ଉପଘାତେ |
ଯେବେ -- ରହି ନାହଁ ନିଶ୍ଚଳ,
କେମିତି ଜାଣିବ ପ୍ରେମ କି ବହଳ, ମିଠା ତା'ର ଆକ୍ଷି-ଜଳ || -୩-||

ଗ୍ରୀଷ୍ମ ରୌଦ୍ରେ ମସ୍ତକପରେ ଖର-ଉଦ୍‌ଗାରେ ଅଗ୍ନି ବର୍ଷା ଦେଖି |
ମର୍ମ କୁହରେ: ଦଗ୍ଧ-କାତରେ ନିଜ ଅନ୍ତରେ ଅଗ୍ନି ପିଣ୍ଡ ରଖି |
କହ -- ହସିଛ କି କେବେ ଥରେ ?
ତେବେ ନା ଜାଣିବ ପ୍ରେମ ହେଲେ ନିତି ଦିନ ରାତି ନର ଝୁରେ ? -୪-||

କିଏ ସେ କହିବ କି ଭାବେ ଜୁଟିବ କେଉଁ ଠାରେ ହେବ କା ସାଥେ କାହାର ପ୍ରେମ |
ମିଳେ ନା ମାଗିଲେ ଖୋଜିଲେ କାନ୍ଦିଲେ; ତାକୁ ଏକା ମିଳେ -- ଯିଏ ଅତି ଭାଗ୍ୟବାନ |
ତାକୁ – ପରିଭାଷା କର ନାହିଁ ;
(କଲେ)
ପାଠ ଘୋଷି ଘୋଷି ରହି ଥିବ ବସି ପ୍ରେ ମ ଖସି ଯିବ କାହିଁ || -୫-||
ଲଲାଟେନ୍ଦୁ କବି ୨୧-ମେଁ-୨୦୧୬

## ଛନ୍ଦ ନ ଥାଇ କବିତା ହୁଏନା ଭାଇ 103

ଗନ୍ଧ ନ ଥାଇ ଚନ୍ଦନ ବନ ନାହିଁ ।
ଛନ୍ଦ ନ ଥାଇ କବିତା ହୁଏନା ଭାଇ ॥ -୧
ବିନା ଗନ୍ଧର ଚନ୍ଦନ ଆଉ
ବିନା ଛନ୍ଦର ସଙ୍ଗୀତ
ଅଗ୍ନି ବିହୀନ ଇନ୍ଧନ କି ବା,
ରକ୍ତବିହୀନ ପଦ୍ମଥ !! -୨

ପଦ୍ୟଥ= ସୈନିକ; ଲଲାଟେନ୍ଦୁ କବି

## ଆସ ସାଥୀ 104

କଳି ଡାକେ ଅଳି ଶୁଣ ବେଳ ଯାଏ ଗଡ଼ି
ଘଡ଼ିକେ ଯିବ ଏ ଜୀବ ଧରା ତଳେ ସଢ଼ି ।

ବେଳ ଥାଉଁ ଆସ ସାଥୀ ଅଧର ବିସ୍ତାରି,
ଆଦରେ ଅଧୃତ କର ମଧୁ ଯାଏ ଝରି ।

ଭରି ଦିଅ ତନୁମନେ ସରାଗୀ ଚୁମ୍ବନ,
ସାର୍ଥ କର ଏ ଭଙ୍ଗୁର ଇଷିତ ଯୌବନ ।

ଲଲାଟେନ୍ଦୁ କବି

## ଜରା ଜଞ୍ଜାଳ 105

ବାଲ୍ୟ କାଳ ଧୂଳିଖେଳ
ସ୍ମୃତି-କୋଳେ ଉଠେ ଝଳି;
ଅବଶ ବୟସେ ଈଶା
ବିବଶେ ଦୀପାଳି ଜାଳି ।।
ଆରତ ଆରତି ଢାଳେ
ଶାଶ୍ୱତ ସଂସ୍ଥିତି ତୁଲେ;
ସଂସାରୁ ନିସ୍ତାର ଖୋଜେ,
ଜର୍ଜର ଜଞ୍ଜାଳ ଜାଳେ ।।

ଲଲାଟେନ୍ଦୁ କବି

## ଦିଅ ମାତା ଜଳ 106

ଅଳସ ବିସଳ ମେଲି   ଲୋଚନ କୋମଳେ
ଆହ୍ଲାଦ ବିହ୍ୱଳେ ଦୋଳେ ମୃଦୁଳ ଅନିଳେ   ।୧
ମହୀରୁହେ କହେ ମାତା   ଢାଳି ଦିଅ ଜଳ;
ସିକ୍ତ କର କେଶ ମୋର,   ଦିଅ ମୋତେ ବଳ   ।୨
ଆଦିତ୍ୟ ଆତପ ପାତେ   ମଳୟ ଅନିଳେ
ବିକଶିବି କିସଳୟ   କୁଳଜ କୁଶଳେ   ।୩
ଦେଖିବି ଭୁବନେ ନବ   ଜୀବନ ଯୌବନ;
ଆହ୍ଲାଦେ ଆସ୍ୱାଦି ଶୁଦ୍ଧ   ଭୁବସ ମୋହନ   ।୪

ଲଲାଟେନ୍ଦୁ କବି

## ଟିକି ତାରା କହେ 107

ନିଶୀ କାଳେ ଶଶି କୋଳେ ଟିକି ତାରା କରେ ଅଳି
ଅପୂର୍ଣ୍ଣା ଅଚଳା; ପୂର୍ଣ୍ଣମସୀ ଦ୍ୟୁତି ଦିଅ ଢାଳି | ୧

ଭୂତଳ ଶୀତଳ କର, ଉର୍ବୀରୁହ ଦିଅ ତୋଳି;
ନୃସଂସ ନହୁଷ ହସ୍ତେ କାନନ କୁଣ୍ଠିତ-ଶିରୀ | ୨

ସ୍ୱହସ୍ତେ ରସନା ନାଶି ଦୈବ ତାପ ଭୋଗେ ନର;
ବୋଧ ଧାରେ ଓଷଧୀଶ ପ୍ରସୀଦ ତା ମତି ହର |୩

ଲଲାଟେନ୍ଦୁ କବି

## ଚୋରା ଚୋରା ପୀରତିରେ 108

ଚୋରା ଚୋରା ପୀରତିରେ ଆଖିରେ ଉଛୁଳା ପାଣି;
କେବେ ହେଇ ଥିଲା ଦେଖା
ଖତାରେ ରହିଛି ଲେଖା
ଠୁଙ୍ଗାବାଲା ଖାତା କେବେ ନେଇ ଗଲାଣି ||

ଠିକଣା ତା ଲେଖି ଗଲା ପାରାବାର ତୀରେ
ଦିଶୁଥିଲା ଫିକା ଫିକା ଚାନ୍ଦିନୀ ରାତିରେ
ଲୁଣି ମାଡ଼ି ଏବେ ସବୁ ଧୋଇ ଗଲାଣି ||

ଲଲାଟେନ୍ଦୁ କବି

## ଆସ ସାଥୀ 109

କଳି ଡାକେ ଅଳି ଶୁଣ ବେଳ ଯାଏ ଗଡ଼ି
ଘଡ଼ିକେ ଯିବ ଏ ଜୀବ ଧରା ତଳେ ସଢ଼ି |

ବେଳ ଥାଉଁ ଆସ ସାଥୀ ଅଧର ବିସ୍ତାରି,
ଆଦରେ ଅଧୃତ କର ମଧୁ ଯାଏ ଝରି |

ଭରି ଦିଅ ତନୁମନେ ସରାଗୀ ଚୁମ୍ବନ,
ସାର୍ଥ କର ଏ ଭଙ୍ଗୁର ଇଷିତ ଯୌବନ |

ଲଲାଟେନ୍ଦୁ କବି

# ଦଉଡ଼ିବ କାଠ ଘୋଡ଼ା 110

ମାତା ଡାକେ ଆସ ପୁତ୍ର ଛାଡ଼ି ଶୁଷ୍କ କାଠ ଗଡ଼ା;
ଶିଶୁ କହେ ଜାଣିନୁ -- ଏ ମୋ ମନ-ମରୁତ ଘୋଡ଼ା !
ଏକା ତାକୁ
ଛାଡ଼ି ଯିବି ନାହିଁ ;
ନଳରେ ଆସିଲେ ଜଳ ତାକୁ ମୁଁ ଦେବି ସହଳ
ନିଜ ହାତେ
ଗାଧେଇ ପାଧେଇ ||-୧

କଡ଼େଇ ଖୋଷଣୀ ଧରି ରଖିଛି ରୋଷେଇ କରି
ପୋଛି ପାଛି ଖୁଆଇବି କ୍ଷିରୀ ପୁରି ତରକାରି;
ସେ ତ କେବେ
ନୁହେଁ ମା ଅଲୋଡ଼ା
ଅଉଷଧ ପେଇ ଦେଲେ, ଖାଇ ପି'ଇ ବଳ ହେଲେ
ଦଉଡ଼ିବ
ଉଠି ମୋର ଘୋଡ଼ା ||-୨

ଲଲାଟେନ୍ଦୁ କବି